# ଚୀନ୍ ଦେଶର ଲୋକକଥା

ଲେଖିକା

**ଶ୍ରୀମତୀ ନିରୁପମା ଅର୍ଘ୍ୟ**

ପ୍ରକାଶକ

**ଅଗ୍ରଦୂତ**

**କଟକ-୨**

# ଚୀନ୍‌ଦେଶର ଲୋକକଥା

ଲେଖିକା :

ଶ୍ରୀମତୀ ଅନୁପମା ଆଚାର୍ଯ୍ୟ

ପ୍ରକାଶକ :

ଅଗ୍ରଦୂତ

ବାଙ୍କାବଜାର, କଟକ-୨

ପ୍ରଥମ ପ୍ରକାଶ—୧୯୮୦

ଦ୍ୱିତୀୟ ପ୍ରକାଶ—୧୯୮୮

ତୃତୀୟ ପ୍ରକାଶ—୧୯୮୯

ପ୍ରଚ୍ଛଦପଟ :

ଶ୍ରୀ ପ୍ରତାପ ପଟ୍ଟନାୟକ

ମୁଦ୍ରଣ :

ଶ୍ରୀସତ୍ୟସାଇ ପ୍ରେସ

କଟକ-୧

ମୂଲ୍ୟ—ଟ ୯-୨୫

# ସୂଚୀପତ୍ର



* * * * *

# ମେଙ୍ଗ୍ ଶଆଙ୍ଗ୍

ମେଙ୍ଗ୍ ଓ ଶଆଙ୍ଗ୍ ନାମରେ ଦୁଇଟି ପରିବାର ପାଖାପାଖି ରହୁଥିଲେ, ଦୁହିଁଙ୍କ ବଗିଚ୍ଚ ମଝିରେ ଗୋଟିଏ ବଡ଼ ପାଚେରି । ଥରେ ସେମାନେ ଏକାବେଳକେ ପାଚେରି ଦୁଇ କଡ଼ରେ ଦୁଇଟି କଖାରୁ ମଞ୍ଜି ପୋତିଲେ । ଗଛ ବଢ଼ିଲା ଓ ପାଚେରି ଉପରକୁ ମାଡ଼ିଯାଇ ଏକାଠି ଛନ୍ଦାଛନ୍ଦି ହୋଇ ଗୋଟିଏ ଗଛ ପରି ହୋଇଗଲା । ମୂଳ ଦୁଇଟି କେବଳ ଦୁଇ କଡ଼ରେ ଥାଏ । କେତେଦିନ ପରେ ସେଇ ଛନ୍ଦାଛନ୍ଦି ଗଛରେ ଗୋଟିଏ ଫଳ ଧରିଲା । କାହା ପଟର ଗଛରେ ଯେ ଫଳ ଧରିଛି, ଜାଣିବା ମୁସ୍କିଲ । ଧୀରେ ଧୀରେ ବଢ଼ି ବଢ଼ି କଖାରୁଟି ଅଦ୍ଭୁତ ଭାବରେ ବଡ଼ ହୋଇଗଲା । ଦୁଇ ପରିବାର ଭିତରେ ତ ଭାରି ଭଲ ସମ୍ବନ୍ଧ । କଥା ହେଲା ପାଚିଗଲେ ଦୁହେଁ ସମାନ ଭାଗ କରି ବାଣ୍ଟିନେବେ ।

କାହା କଥା—କଖାରୁ କଟା ହେଲା ବେଳକୁ ତା' ଭିତରୁ ଗୋଟିଏ ଅତି ସୁନ୍ଦରିଆ ଝିଅଟିଏ ବାହାରିଲା । ଦୁଇ ପରିବାର ଆନନ୍ଦ ଦେଖେ କିଏ ? ତାକୁ ଖୁବ୍ ଗେହ୍ଲାରେ ବଢ଼େଇଲେ । ନା ରଖିଲେ ମେଙ୍ଗ୍ ଶଆଙ୍ଗ୍ ।

ଦିନ ଗଡ଼ିବାକୁ ଲାଗିଲା । ଶିନ୍ ସି ହୁଆଙ୍ଗ୍ଟି ବୋଲି ଜଣେ ଦୁର୍ଦ୍ଦାନ୍ତ ରାଜା ଚୀନ୍ ଦେଶରେ ରାଜତ୍ୱ କରୁଥାନ୍ତି, ରାଜାଙ୍କର ହଠାତ୍ ଧାରଣା ହେଲା ରାଜ୍ୟର ଉତ୍ତର ପଟୁ 'ହୁନ୍'ମାନେ ତାଙ୍କ ରାଜ୍ୟ ଆକ୍ରମଣ କରିପାରନ୍ତି । ଶତ୍ରୁ ହାତରୁ ନିଜ ରାଜ୍ୟକୁ ରକ୍ଷା କରିବା ପାଇଁ ଚୀନର ଉତ୍ତର ସୀମାନ୍ତରେ ଗୋଟିଏ ବଡ଼ ପାଚେରି ତିଆରି କରିବାର ଆୟୋଜନ ହେଲା । ରାଜାଙ୍କ ଆଦେଶରେ ପାଚେରି କାମ ଧୁମ୍‌ଧାମ୍ ଚାଲିଲା । ମିସ୍ତ୍ରୀ ମୂଲିଆମାନେ ଦିନରାତି କାମରେ ଲାଗିଲେ । ହେଲେ ଆଶ୍ଚର୍ଯ୍ୟ କଥା; ଫୁଟେ ହେଲେ ପାଚେରି ଠିଆ ହୋଇ ପାରିଲା ନାହିଁ । କିଛି କାମ ହୋଇଗଲା ମାତ୍ରେ ଆଗରୁ ତିଆରି ହୋଇଥିବା ଅଂଶକ ଭୁଷୁଡ଼ି ପଡ଼େ । ରାଜା ଭାଳେଣିରେ ପଡ଼ିଗଲେ । କଥା କଅଣ ? ପାଚେରିଟା ଏତେ ଯତ୍ନରେ ତିଆରି ହେଉଛି, ପୁଣି କିଛି କଥା ନାହିଁ ଭୁଷୁଡ଼ି ପଡ଼ୁଛି କାହିଁକି ? ରାଜ୍ୟର ଜ୍ଞାନୀ ଲୋକଙ୍କୁ

ତାର କାରଣ ଅନୁସନ୍ଧାନ କରାଗଲା । କେହି କିଛି କାରଣ କହି ପାରିଲେ ନାହିଁ ।

ଜଣେ ଜ୍ୟୋତିଷୀ କହିଲେ, ଦଶହଜାର ମାଇଲ ବ୍ୟାପୀ ଏଇ ପାଚେରୀ ତିଆରି ପାଇଁ ଯଦି ପ୍ରତି ମାଇଲ ବ୍ୟବଧାନରେ ଗୋଟିଏ ଲେଖା ମଣିଷ ବଳି ଦିଆଯାଏ, ତେବେ ଯାଇ ଏ ପାଚେରୀ ରହିପାରେ । ନ ହେଲେ ନୁହେଁ ।

ଦୁର୍ଦ୍ଦାନ୍ତ ରାଜା ମଣିଷଙ୍କୁ ତ ପୋକମାଛି ପରି ମଣୁଥିଲେ । ସଙ୍ଗେ ସଙ୍ଗେ ଆଦେଶ ଦେଲେ, 'ପ୍ରତି ମାଇଲ ବ୍ୟବଧାନରେ ଜଣେ ଜଣେ ଲୋକ ବଳି ଦିଆଯିବ ।' ସାରା ଚୀନ୍‌ଦେଶରେ କୋକୁଆ ଭୟ ବ୍ୟାପିଗଲା । ରାଜ୍ୟବାସୀ ଭୟରେ ଥରହର ହେବାକୁ ଲାଗିଲେ । କାହା ପାଳି କେଉଁ ଦିନ ପଡ଼ିବ କିଏ ଜାଣେ ?

ଜଣେ ଲୋକ ମୁଣ୍ଡକୁ ବୁଦ୍ଧିଟିଏ ଜୁଟିଲା । ସେ ରାଜାଙ୍କ ପାଖରେ ପହଞ୍ଚି ରାଜ୍ୟର ଅବସ୍ଥା ବୁଝାଇ କହିଲେ—"ମହାରାଜ ! ଆପଣ ଏ କି କଥା କରିବାକୁ ଯାଉଛନ୍ତି ? ଦେଶରୁ ଦଶହଜାର ଲୋକ ବଳି ପଡ଼ିଗଲେ ଆଉ ରହିବ କିଏ ? ଲୋକେ ଆପଣଙ୍କର ଏ ମନମୁଖୀ ଅତ୍ୟାଚାର ସହିବେ ବୋଲି ଆପଣ ଭାବୁଛନ୍ତି କେମିତି ? ଦେଶରେ ବିଦ୍ରୋହ ଆରମ୍ଭ ହୋଇଯିବ । ଏ ପାଚେରୀ କେବେହେଲେ ଶେଷ ହୋଇ ପାରିବ ନାହିଁ । ମୋ ସାନ କୁହା ମାନନ୍ତୁ । 'ଓ୍ୟାନ୍' ବୋଲି ଲୋକଟିଏ ଏଇ ସହରରେ ଅଛି । ଓ୍ୟାନ୍ ଶବ୍ଦର ମାନେ ଦଶହଜାର । ଆପଣ କେବଳ ସେଇ ଦଶହଜାର ନାମଧାରୀ ଲୋକଟିକୁ ବଳି ଦେଇ ଦଶହଜାର ଲୋକଙ୍କର ଜୀବନ ରକ୍ଷା କରନ୍ତୁ ଓ ସେଥି ସଙ୍ଗେ ସଙ୍ଗେ ଆପଣଙ୍କ ଆଦେଶ ମଧ୍ୟ ବଜାୟ ରହୁ ।" ରାଜାଙ୍କ ମନକୁ କଥାଟା ପାଇଲା । ଓ୍ୟାନ୍‌କୁ ଖୋଜା ଚାଲିଲା ।

ଓ୍ୟାନ୍ ଏ ଖବର ପାଇ ରାତାରାତି ଉଠି ଘର ଛାଡ଼ି ଜୀବନ ବଞ୍ଚେଇବା ପାଇଁ କୁଆଡ଼େ ପଳେଇଗଲା ।

ମେଙ୍ଗ୍ ଚିଆଙ୍ଗ୍ ସେତେବେଳକୁ ସତର ଅଠର ବର୍ଷ ସୁନ୍ଦରୀ ଝିଅଟିଏ ହୋଇ ଗଲାଣି । ଦିନେ ଜହ୍ନରାତିରେ ସେ ତାଙ୍କ ବଗିଚା ପୋଖରୀରେ ଗାଧୋଉଥାଏ । ମନ ତା'ର କ'ଣ ହେଲା କେଜାଣି, ଖୁସିରେ

ବଡ଼ ପାଟିରେ କହିଲା—"ଯଦି ଏଇଲେ କେହି ଲୋକ ଆସି ମୋ ପାଖରେ ପହଞ୍ଚେ, ତେବେ ମୁଁ ଚିରଦିନ ତା'ର ସ୍ତ୍ରୀ ହୋଇ ରହିବ ।"

ଯୋଗକୁ ଦେଖ ! ସେଇ ବଗିଚାରେ ଓ୍ୟାନ୍ ଲୁଚି ବସିଥିଲା । ଝିଅଟିର କଥା ଶୁଣି ବୁଦା ଆଡ଼ୁଆଳରୁ ବାହାରି ଆସି କହିଲା—"ଦେଖ, ମୁଁ ଆସି ଠିକ୍ ତୋ କହିବା ମୁତାବକ ପହଞ୍ଚିଗଲି । ଏବେ ତୋ କହିଥିବା କଥା ତୁ ରକ୍ଷା କର । ଝିଅଟି ଓ୍ୟାନ୍‌କୁ ଦେଖି ଭାରି ଖୁସି ହୋଇଗଲା ଓ ସେମାନଙ୍କ ବାହାଘର ପ୍ରସ୍ତାବ ସେଇଠି ପକ୍‌କା ହୋଇଗଲା ।

ମେଙ୍ଗ୍ ଓ ଚିଆଙ୍ଗ୍ ଦୁଇ ପରିବାର ଝିଅର ବାହାଘର ଧୂମ୍‌ଧାମ୍‌ରେ ଶେଷ କଲେ । ଘର ଲୋକଗହଳରେ କମ୍ପୁଛି । ଖିଆପିଆ ଚାଲିଛି । କେମିତି କେଜାଣି ରଜାଙ୍କ କାନକୁ ଏ ଖବର ଚାଲିଗଲା । ସିପାହୀମାନେ ଆସି ଓ୍ୟାନ୍‌କୁ ସେଇ ଭୋଜି ସଭାରୁ ବାନ୍ଧି ନେଇଗଲେ । ମେଙ୍ଗ୍ ଚିଆଙ୍ଗ୍ ଆଖିରୁ ଲୁହ ଧାର ବହି ଚାଲିଥାଏ । ତା'ର ସମସ୍ତ ଅନୁରୋଧ ସତ୍ତ୍ୱେ ସିପାହୀମାନେ ତା' କଥାକୁ କାନ ଦେଲେନି । ଲୋକେ ଭକୁଆ ପରି ଚାହିଁ ରହିଥାନ୍ତି । ବର ବଳି ପଡ଼ିବା ପାଇଁ ବନ୍ଦୀ ହୋଇ ଚାଲିଗଲା । ଦୁଇ ପରିବାରରେ କାନ୍ଦ ବୋବାଳି ପଡିଗଲା । ଅବୁଝା ରଜାଙ୍କ ଆଦେଶକୁ ଅମାନ୍ୟ କରିବାକୁ ବଳ କାହାର ?

କାନ୍ଦି କାନ୍ଦି ମେଙ୍ଗ୍ ଚିଆଙ୍ଗ୍‌ର ଦିନ ସରିଲା ନାହିଁ । ଦିନେ ହଠାତ୍ ତା' ମନକୁ କଥାଟିଏ ଜୁଟିଲା । ରଜାଙ୍କର ଅତ୍ୟାଚାରରୁ ସ୍ୱାମୀକୁ ସିନା ସେ ରକ୍ଷା କରି ପାରିଲା ନାହିଁ, ହେଲେ ତାଙ୍କର ସ୍ମୃତି ଚିହ୍ନ ସ୍ୱରୂପ ତାଙ୍କର ଅସ୍ଥି ସଂଗ୍ରହ କରି ଆଣି ସେ ପାଖରେ ରଖିବ । ଏଇ ଚିନ୍ତା ତାକୁ ଏତେ ଅସ୍ଥିର କଲା ଯେ ସେ ଆଉ ଘରେ ରହି ପାରିଲା ନାହିଁ । ସ୍ୱାମୀର ଅସ୍ଥି ସନ୍ଧାନରେ ସେ ଏକୁଟିଆ ବାହାରି ପଡ଼ିଲା । ସେତେବେଳେ ତ ଗାଡ଼ି ମଟର ନ ଥିଲା । ପାଦରେ ଚାଲି ଚାଲି ପାହାଡ଼ ପର୍ବତ ନଈ ନାଳ ପାରି ହୋଇ ମେଙ୍ଗ୍ ଚିଆଙ୍ଗ୍ ବାତ୍ୟାଣୀ ପରି ଘୁରି ବୁଲିଲା । ବହୁତ ଦିନ ବୁଲି ବୁଲି ସେଇ ମେଘନାଦ ପାଚେରି ପାଖରେ ଯାଇ ପହଞ୍ଚିଲା । କିନ୍ତୁ ତା' ପରେ ? ସେ କରିବ କ'ଣ ଦଶହଜାର ମାଇଲ୍ ଲମ୍ବ ଏ ପାଚେରିର କେଉଁ ଜାଗାରେ ତା ସ୍ୱାମୀର ହାଡ଼ ପୋତା ହୋଇ ରହିଛି ସେ ଜାଣିବ କେମିତି ? ତାକୁ ପୁଣି ସେ ସଂଗ୍ରହ ବା କରିବ କେମିତି ?

ଆଉ କିଛି ତା'ର କରିବାର ନାହିଁ । ହତାଶାରେ ଭାଙ୍ଗିପଡ଼ି ସେ ସେଇଠି ବସି ବିକଳରେ କାନ୍ଦିବାକୁ ଲାଗିଲା ସେ ବିକଳ କାନ୍ଦର କି ଅଦ୍ଭୁତ ଶକ୍ତି, ସତକୁ ସତ ପଥର ମଧ୍ୟ ତରଳିବାକୁ ଲାଗିଲା । ପାଟେଶ୍ୱରୀ ଭୂମିରୁ ଫାଡ଼ି ତା' ଆଗରେ ଗଚ୍ଛିତ ହୋଇ ପଡ଼ିଲା ଓ ସେ ତା' ସ୍ୱାମୀର ଅସ୍ଥି ସବୁ ଅକ୍ଷତ ଅବସ୍ଥାରେ ପାଇଗଲା । ଆଃ ତା'ର ସେ କି ଆନନ୍ଦ ! ତା' ଶ୍ରମ ସାର୍ଥକ ହୋଇଗଲା ।

ତାଙ୍କର ରାଜ୍ୟର ଝିଅଟିଏ ସ୍ୱାମୀର ସ୍ମୃତିକୁ ମନରେ ରଖି ଏତେ ବଡ଼ ଅସାଧ୍ୟ ସାଧନ କରି ପାରିଛି ଶୁଣି ରାଜା ତାକୁ ଦେଖିବାକୁ ମନ କଲେ । ଝିଅଟିର ରୂପ ଦେଖି ଆଖି ଲାଖିଗଲା । ରାଜା ତାକୁ ରାଣୀ କରିବାକୁ ମନ କଲେ । ଝିଅଟି ଦେଖିଲା ଆଉ ଉପାୟ ନାହିଁ । ମନ ନ ଥିଲେ ବି ତା'ର ବଳ କେତେ ? ରାଜା ଜବରଦସ୍ତି କଲେ ସେ କ'ଣ କରି ପାରିବ ? ସେ ରାଜି ହୋଇଗଲା । ଅବଶ୍ୟ ତିନୋଟି ସର୍ତ୍ତରେ—

ପ୍ରଥମ—୪୯ ଦିନ ପର୍ଯ୍ୟନ୍ତ ସେ ତା'ର ମୃତ ସ୍ୱାମୀର ସ୍ମୃତି ଉଦ୍ଦେଶ୍ୟରେ ଗୋଟିଏ ଉତ୍ସବ କରିବ ।

ଦ୍ୱିତୀୟ—ନଦୀ କୂଳରେ ୪୯ ଫୁଟ ଉଚ୍ଚରେ ଗୋଟିଏ ସୁସଜ୍ଜିତ ମଣ୍ଡପ ତିଆରି ହେବ, ଯେଉଁଠି ସେ ତା' ସ୍ୱାମୀ ଉଦ୍ଦେଶ୍ୟରେ ତର୍ପଣ କରିବ ।

ତୃତୀୟ ଓ ଶେଷ—ତର୍ପଣ ଦିନ ରାଜା ତାଙ୍କ ସଭାସଦ୍‌ମାନଙ୍କ ସହିତ ସେଠି ଉପସ୍ଥିତ ରହିବେ ।

ରାଜାଙ୍କର ତ ତାକୁ ରାଣୀ କରିବା ଇଚ୍ଛା ରହିଛି, ତେଣୁ ସେ ରାଜି ହୋଇଗଲେ । ସବୁ କାମ ସୁନ୍ତୁଖୁରୁରେ ଶେଷ ହେଲା । ଶେଷଦିନ ମେଙ୍ଗ୍ ଜିଆଙ୍ଗ୍ ୪୯ ଫୁଟ ଉଚ୍ଚ ମଣ୍ଡପ ଉପରକୁ ତର୍ପଣ କରିବା ଉଦ୍ଦେଶ୍ୟରେ ଉଠିଲା । ରାଜା ଓ ସଭାସଦ୍‌ମାନେ ତଳେ ବସି ରହିଥାନ୍ତି । ନଦୀ କୂଳରେ ମଣିଷ ଥାଟ ପଟାଳି । ହଜାର ହଜାର ଲୋକ ରୁହିଁ ରହିଥାନ୍ତି । ମେଙ୍ଗ୍ ଜିଆଙ୍ଗ୍ ମଣ୍ଡପ ଉପରେ ଠିଆ ହୋଇ ରାଜାଙ୍କୁ ତାଙ୍କ କୃତକର୍ମ ଲାଗି ବଡ଼ ପାଟିରେ ଅଭିଶାପ ଦେବାକୁ ଲାଗିଲା ।

ସେ ଅଭିଶାପ ଶୁଣି ରାଜା ରାଗରେ ଜଳିଗଲେ । ତଥାପି ବହୁ କଷ୍ଟରେ ନିଜକୁ ସ୍ଥିର ରଖିଥାନ୍ତି । ସେତିକବେଳେ ଏକ ଅଦ୍ଭୁତ ଶବ୍ଦ

ଶୁଣି ରାଜା ଓ ଦର୍ଶକମାନେ ଚମକି ଉଠିଲେ । ଦେଖୁ ଦେଖୁ ଝିଅଟି ମଣ୍ଡପ ଉପରୁ ସିଧା ଡେଇଁ ପଡ଼ିଲା ନଈ ଭିତରକୁ । ସେ ଦୃଶ୍ୟ ଦେଖି ରାଜା ଆଉ ସମ୍ଭାଳି ପାରିଲେ ନାହିଁ । ତାଙ୍କ ମୁଣ୍ଡ ଉପରକୁ ପିତ୍ତ ଚଢ଼ିଗଲା ରାଗରେ—"ଆଚ୍ଛା ! ଠକିଦେଲା ସେ ମତେ ଏମିତି ଶେଷରେ !" କହୁ କହୁ ତାଙ୍କ ସୈନ୍ୟବାହିନୀକୁ ସେଇ ବଦ୍‌ମାସ୍ ଜିଦ୍‌ଖୋର ଝିଅଟାର ମୃତ ଦେହକୁ କାଟି ଟିକି ଟିକି . କରି ନଈରେ ଭସେଇ ଦେବାକୁ ଆଦେଶ ଦେଲେ । ଆଦେଶ ପାଳିତ ହେଲା । କିନ୍ତୁ କି ଆଶ୍ଚର୍ଯ୍ୟ ! ମେଙ୍ଗ୍ ଚିଆଙ୍ଗ୍‌ର ଶରୀରର ଟିକି ଟିକି ଅଂଶ ନଈ ପାଣିରେ ଯେଉଁଠି ପଡ଼ିଲା, ସେଠି ଅଦ୍ଭୁତ କିସ୍ମାମାନ ଘଟିଗଲା । ସୁନ୍ଦର ସୁନ୍ଦର ସୁନେଲି ରୂପେଲି ମାଛ ସବୁ ନଈ ପାଣିରେ ଖେଳିବା ଦେଖି ରାଜା ଓ ଦର୍ଶକମାନେ ହାଁ କରି ଅନାଇ ରହିଲେ । କିନ୍ତୁ ମେଙ୍ଗ୍ ଚିଆଙ୍ଗ୍‌ର ଆତ୍ମା ମାଛମାନଙ୍କ ଆଖି ଭିତରୁ କ୍ରୂର ଲୋକଙ୍କୁ ଉପହାସ କଲା ପରି ଗୃହୁଁ ଗୃହୁଁ ଗମ୍ଭୀର ଜଳରେ ମିଳେଇ ଗଲା ।

* * *

# ମେଜିକ୍ ପଥର

ଭାରି କାମିକା ବୁଢ଼ାଟିଏ । ତା'ର ତିନି ପୁଅ । ଗରିବ ଘର । ବାପ ଯେତିକି କାମିକା ପୁଅ ତିନିହେଁ ସେତିକି ଠାପୁଆ । ଗାଁର ବୁଲି-ଟୋକାଙ୍କ ସାଙ୍ଗେ ଖେଳି ବୁଲି ଦିନ କଟାନ୍ତି । ତାଙ୍କରି ଚିନ୍ତାରେ ବାପ ମାଆଙ୍କ ମନରେ ଭାରି ଦୁଃଖ ।

ଦିନେ ବାପ ତିନି ପୁଅଙ୍କୁ ଡାକି ବହୁତ ବୁଝାଇଲେ । ହଠାତ୍ ବାପର ନିରାଶିଆ ମୁହଁକୁ ଚାହିଁଦେଇ ପିଲାଙ୍କ ମନ କଅଣ ହୋଇଗଲା । ବାପ ପାଖରେ ସେମାନେ ପ୍ରତିଜ୍ଞା କଲେ, 'କାଲି ସକାଳୁ ଆମେ ବିଦେଶ କରି ଯିବୁ ବାପା । ତୁମେ ଦେଖିବ, ରୋଜଗାର ବାଟ ଧରିଲେ ଆମେ ଘରକୁ ଫେରିବୁ ।"

ତିନି ଭାଇ ଠିକ୍ କଲେ ରାତି ପାହିଲେ ସେମାନେ ବାହାରି ଯିବେ । ଗୋଟିଏ ଛକ ମୁଣ୍ଡ ଜାଗା ଠିକଣା ହେଲା । ତିନି ବର୍ଷ ପରେ ସେଇଠି ଏକାଠି ହେବେ ଓ ସାଙ୍ଗ ହୋଇ ଘରକୁ ଫେରିବେ ।

ବାପ ମା' ପୁଅ ଏକାଠି ବସି ଖାଇଲେ ସେ ରାତିରେ । ପୁଣି ତିନି ବର୍ଷ ପରେ ଦେଖା ହବ । କେତେ ଦୁଃଖ ସୁଖ ହେଲେ । ରାତି ଗହୀର ହେଲା । ଯେ ଯାହା ଜାଗାକୁ ଗଲେ ଶୋଇବାକୁ ।

ରାତି ଅଧରେ ବଡ଼ ପୁଅର ନିଦ ଭାଙ୍ଗିଲା । ସମସ୍ତଙ୍କ ଶୋଇଲା ମୁହଁକୁ ଚାହିଁ ମନେ ମନେ ସେମାନଙ୍କଠାରୁ ବିଦାୟ ନେଇ ଘର ଛାଡ଼ି ବାହାରି ଗଲା ।

ରାତି ଜାଙ୍ଗୁଲୁ ଜାଙ୍ଗୁଲୁ ଅଛି ମଝିଆଁ ପୁଅ ଧଡ଼ପଡ଼ ହୋଇ ଉଠି ପଡ଼ିଲା । ରାତିର ପ୍ରତିଜ୍ଞା ତା'ର ମନେ ପଡ଼ିଗଲା । ଉଠି ଦେଖିଲା ବଡ଼ ଭାଇ ଘରୁ ଚାଲିଗଲାଣି । ତା'ର ଡେରି ହୋଇଗଲା ଭାବି ସେ ମଧ୍ୟ ଭାଇ ପରି ଶୋଇ ରହିଥିବା ବାପ ମା'ଙ୍କ ମୁହଁକୁ ଥରେ ଅନାଇଁ ଦେଇ ଭାଗ୍ୟ ପରୀକ୍ଷା କରିବା ପାଇଁ ଘର ଛାଡ଼ିଲା ।

ସକାଳ ହୋଇଗଲା—ଶେଷରେ ନିଦ ଭାଙ୍ଗିଲା ସାନର । ବଡ଼ ଭାଇ ଦୁହେଁ ତାକୁ ନ ଉଠାଇ ଚାଲି ଗଲେଣି ଦେଖି ତା ମନ ଖରାପ

ହୋଇଗଲେ । ବାପ ମା'ଙ୍କୁ ନ ଉଠାଇ ବାଡ କବାଟ ଖୋଲି ସେ ମଧ୍ୟ ଚାଲିଗଲେ ଅଜଣା ବାଟରେ । ଘରେ ରହିଗଲେ କେବଳ ବୁଢ଼ା ବୁଢ଼ୀ ପିଲାଙ୍କ ବାଟକୁ ଅନାଇ ।

ସାନ ଭାଇ ବଡ଼ ଦୁହିଁଙ୍କୁ ଖୋଜି ଖୋଜି ଆଗକୁ ଚାଲିଲା । କୁଆଡ଼େ ସେମାନେ ଯାଇଛନ୍ତି ସେ ଜାଣିନି ଯେ ତାଙ୍କୁ ପାଇବ ? ଦୁଇ ଦିନ ବୁଲି ବୁଲି ତାଙ୍କର କିଛି ଖବର ପାଇଲା ନାହିଁ । ମନ ଦୁଃଖରେ ଚାଲିଛି । କୋଉଠୁ ଯେ ଡ୍ରମ ବଗୁଲର ଶବ୍ଦ ଭାସି ଆସିଲା । ଶବ୍ଦକୁ କାନେଇ କାନେଇ ସେଠି ପହଞ୍ଚି ଦେଖିଲା ସେଠି ଥିଏଟର ହଉଚି । ଥିଏଟର ସରିଲା । ଦର୍ଶକଙ୍କ ଭିଡ଼ ଭାଙ୍ଗିଲା । ସେ ସେଇଠି ରହିଁ ଠିଆ ହୋଇଥାଏ । ଦଳର ଜଣେ ତାକୁ ଠିଆ ହୋଇଥିବାର ଦେଖି ପଚାରିଲା—"କିରେ ବାବୁ ! ଏଠି ଆଉ କ'ଣ ଦେଖୁଚୁ ! ଖେଳତ ସରିଗଲାଣି, ଯାଉନୁ ।"

ପିଲାଟି କ'ଣ କହିବ କିଛି ଭାବି ନ ପାରି ହଠାତ୍ କହିଦେଲା, "ମତେ ଭଲ ଗୀତ ବୋଲି ଆସେ । ତୁମ ପାର୍ଟିରେ ମତେ ରଖିବ ?" ତାଙ୍କର ଗୀତ ବୋଲାଳିଟିଏ ଦରକାର ଥିଲା । ସେମାନେ ତା ଗୀତ ଶୁଣି ତାକୁ ଦଳରେ ମିଶେଇ ନେଲେ । ଅଳ୍ପଦିନ ଭିତରେ ଗୀତ ବୋଲି ଓ ଅଭିନୟ କରି ସେ ଖୁବ୍ ନାଁ କଲା । ଥିଏଟର ଦଳ ସହିତ ମିଶି ସାରାଦେଶ ବୁଲି ଖୁସିରେ ତା'ର ତିନି ବର୍ଷ କଟିଗଲା ।

ହଠାତ୍ ଦିନେ ରାତିରେ ଶୋଇଚି ସେ ତା ମା'କୁ ସ୍ୱପ୍ନ ଦେଖିଲା । ନିଦ ଭାଙ୍ଗିଗଲା । ଆହା ! ବର୍ଷକ ଦିନ ଗଣୁଥିବ କେବେ ତା ପିଲାଏ ଫେରିବେ । ଏଇ ଚିନ୍ତା ତା ମନକୁ ଆସିଲା ମାତ୍ରେ ସେ ଅସ୍ଥିର ହୋଇ ଉଠିଲା । କୋହରେ ତା ଛାତି ଫାଟିଗଲା ପରି ଲାଗିଲା । ଭାଇମାନେ ମନେ ପଡ଼ିଲେ । କଣ୍ଠ ଦିନ ପୂରି ଆସିଲାଣି । ଠିକଣା ହୋଇଥିବା ଜାଗାକୁ ସେମାନେ ନିଶ୍ଚୟ ଫେରି ଆସି ତା'ର ବାଟ ଚାହିଁ ବସିଥିବେ । ଆଉ କି ତା ମନ ଥୟ ଧରେ ! ନା, ଆଉ ନୁହେଁ ଆଉ ମୁହୂର୍ତ୍ତେ ବି ସମୟ ନଷ୍ଟ କରିବାର ନୁହେଁ । ତାକୁ ଏଇଲେ ବାହାରିବାକୁ ହବ । ଅଭିନେତାର ବେଶ ପୋଷାକ ସବୁ ସେଇଠି ପୋପାଡ଼ି ଦେଇ ତାର ପ୍ରିୟ ଗୀଟାରଟି ହାତରେ ଧରି ଘରମୁହାଁ ହୋଇ ଧାଇଁବାକୁ ଲାଗିଲା ।

ଚାଲି ଚାଲି ସେ ବାଟ ହୁଡ଼ିଲା । ଅନ୍ୟମନସ୍କ ହୋଇ ଚାଲୁ ଚାଲୁ ହଠାତ୍ ଦେଖିଲା ସେ ଠାଏ ସମୁଦ୍ର କୂଳରେ ପହଞ୍ଚି ଯାଇଛି । "ଏଠିକି କେମିତି ଆସିଲି । ଏହାକୁ ପାରି ହେବ କେମିତି ? କାହିଁ ଜାହାଜ କି ଡଙ୍ଗା ଗୋଟେ ହେଲେ ବି ତ ଦିଶୁନି ।" ସେଠି କୋଉଠି ମଣିଷର ଚିହ୍ନ ବର୍ଣ୍ଣ ନାହିଁ । କାହାକୁ ହେଲେ କ'ଣ ପଚାରନ୍ତା ! ତାର ସବୁ ଆଶା ଭରସା ସେଇ ଢେଉମାନଙ୍କ ସାଙ୍ଗେ ମିଳାଇ ଗଲା । ହାତରେ ପଇସା-ଟିଏ ନାହିଁ । ସେତ ଲୁଚିକରି ପଳାଇ ଆସିଚି । ଭୋକରେ କରଡ଼ ଜଳୁଚି । ଚାଲି ଚାଲି ଗୋଡ଼ରୁ ବାଲୁଲା ଉଠିଲାଣି । ଆଉ ବାପ ମାଙ୍କୁ ଦେଖି ପାରିବନି ? ଭାଇମାନଙ୍କୁ କ'ଣ ପାଇବନି ? ବଞ୍ଚି କି ଲାଭ ? ସମୁଦ୍ରକୁ ଡେଇଁପଡ଼ି ଏ ଯନ୍ତ୍ରଣାରୁ ଉଦ୍ଧାର ପାଇଯିବା ପାଇଁ ତାର ମନ ହେଲା । ସମୁଦ୍ର ବାଲିରେ ବସି ପଡ଼ିଲା ବେଳକୁ ହାତରେ ଧରିଥିବା ଗିଟାର୍‌ଟିର ଉପସ୍ଥିତି ସେ ଅନୁଭବ କଲା । ସେ ତେବେ ଏକା ନୁହେଁ । ତା ଗିଟାର୍‌ଟି ତା ସାଙ୍ଗରେ ଅଛି । ଅଭ୍ୟାସ ମୁତାବକ ଗିଟାର୍‌ର ତାର ଉପରେ ସେ ଅଙ୍ଗୁଳି ଚାଳିଲା ଓ ଗୀତ ବୋଲିବାକୁ ଲାଗିଲା । ଗୋଟିଏ ପରେ ଗୋଟିଏ ବିରହର କବିତା ସବୁ ତା'ର ମନେ ପଡ଼ି ଯାଉଥାଏ । ଗୀତର ପଦ ଗୁଡ଼ିକ ସତେକି କିଏ ତାରି ଜୀବନକୁ ଦେଖି ଲେଖିଥିଲା, ଏମିତି ତା'ର ମନେ ହଉଥାଏ । ଆଖିରୁ ଧାର ଧାର ଲୁହ ବହି ଯାଉଥାଏ । ଏଇଠି ବୋଧେ ତା ଜୀବନ ଶେଷ ହୋଇଯିବ । ଆଉ ସେ କାହାରିକୁ ଦେଖି ପାରିବନି ।

ହଠାତ୍ ଏକ ଅଦ୍ଭୁତ ସ୍ୱର ଶୁଣି ସେ ଲୁହ ପୋଛି ଆଗକୁ ଚାହିଁଲା । ଦେଖିଲା ସମୁଦ୍ର ରଜାଙ୍କର ଜଣେ ଚର ଖଣ୍ଡେ ପତକା ହାତରେ ଧରି ତା ଆଗରେ ଠିଆ ହୋଇ ମଣିଷ ପରି କହୁଛି, "ଆମ ରଜା ତୁମ ଗୀତ ଶୁଣି ଭାରି ଖୁସି ! ଆସ ଆସ ମୋ ସାଙ୍ଗରେ । ତୁମକୁ ଆମ ରାଜ୍ୟକୁ ଯିବାକୁ ନିମନ୍ତ୍ରଣ କରିଛନ୍ତି ।"

ଏ ପ୍ରକାର ଅଦ୍ଭୁତ ନିମନ୍ତ୍ରଣରେ ସେ ବାବା ହେଲା ଯେତିକି, ଖୁସି ମଧ୍ୟ ହେଲା ସେତିକି । ଆଉ କିଛି ନ ଭାବି ତା ସାଙ୍ଗେ ବାହାରି ପଡ଼ିଲା ।

ଦୁହେଁ ଆଗ ପଛ ହୋଇ ସମୁଦ୍ର ଭିତରକୁ ମାଡ଼ି ଚାଲିଲେ । ଆଗରେ ଅନୁଚରଟି ସେଇ ପତାକାଟିକୁ ଢେଉମାନଙ୍କ ଉପରେ ବାଡ଼େଇ ବାଡ଼େଇ ଚାଲିଥାଏ । ମେଜିକ୍ ପରି କାମ ଦେଉଥାଏ ପତକା ଖଣ୍ଡକ— ଢେଉମାନେ ଦୁଇ ପାଖକୁ ଆଉଜି ଯାଉଥାନ୍ତି ଓ ତାଙ୍କ ପାଇଁ ଗୋଟିଏ ପ୍ରଶସ୍ତ ବାଟ ହୋଇ ଯାଉଥାଏ ବାଲିରେ ।

ପହଞ୍ଚିଗଲେ ସେମାନେ ଯାଇ ରାଜ ଦରବାରରେ । କି ସୁନ୍ଦର ସାଜସଜ୍ଜା ! ପାଣି ଭିତରେ ଏଡ଼େ ସୁନ୍ଦର ଜାଗା ଥାଏ । ଅତିଥିଙ୍କୁ ଆଦର ସମ୍ମାନର ସୀମା ନାହିଁ । ରଙ୍ଗ ବେରଙ୍ଗର ମସ୍ତ ବଡ଼ ବଡ଼ କଙ୍କଡ଼ାମାନେ ବଢ଼ିଆ ବଢ଼ିଆ ଖାଇବାର ଜିନିଷ ସବୁ ଆଣି ଟେବୁଲ ସାରା ସଜେଇ ଦେଇ ଗଲେ । କ'ଣ ସେ ଜିନିଷ କିଏ ପଚାରେ । ଭୋକ ବେଳରେ ସବୁ ସୁଆଦ । ମନ ବୋଧ କରି ଅ'ଗ ପେଟେ ଖାଇଲା—ତା ପରେ ଆରମ୍ଭ ହେଲା ଗୀତର ଆସର । ରାଜା ତା ଗୀତରେ ଭାରି ଖୁସି ।

ତିନି ଦିନ ମଜଲିସ୍‌ରେ କଟିଗଲା । ମା'ର ଚିନ୍ତା ତାକୁ ପୁଣି ଘାରିଲା । ଏଇ ମୁହୂର୍ତ୍ତରେ ସେ ମା' ପାଖରେ ପହଞ୍ଚିପା'ନ୍ତା କି ? ମା' ତାର କେଡ଼େ ଖୁସି ହୋଇଯା'ନ୍ତା । ତହୁଁ ଆରଦିନ ସକାଳୁ ସାଗର ରାଜ୍ୟ ଛାଡ଼ିବ ବୋଲି ଠିକ୍ କଲା ।

ତିନି ଦିନର ରହଣି ଭିତରେ ରାଜା ପୁଅ ସାଙ୍ଗରେ ତା ମନ ଭାରି ମିଳିଥାଏ । ଶୁଖିଲା ମୁହଁ ଦେଖି ସାଙ୍ଗ କାରଣ ପଚାରିଲା, "ଆମ ରାଜ୍ୟ ଭଲ ଲାଗୁନି କିଓ ? କ'ଣ ଅସୁବିଧା ହେଲା କି ? ତୁମ ମୁହଁ କାହିଁକି ଶୁଖି ଯାଇଚି ?

ସାଙ୍ଗଟି ସତକଥା କହିଲା, "ମା' କଥା ମନେ ପଡ଼ୁଛିରେ ଭାଇ, ଆଉ କିଛି ଭଲ ଲାଗୁନି । ଅନେକ ଦିନୁ ତାକୁ ଛାଡ଼ି କରି ଆସିଲିଣି । କାଲି ସକାଳୁ ମୁଁ ଏଠୁ ଚାଲିଯିବି । ତୁମେ ରାଜାଙ୍କୁ କହି ମୋ ଯିବାର ସୁବିଧା ଟିକେ କରିଦେବ ।"

ରାଜା ପୁଅ ସାଙ୍ଗର ଅବସ୍ଥା ଠିକ୍ ଧରି ପାରି ବୁଦ୍ଧି ଟିଏ ବତାଇଲା, "ଦେଖ ସାଙ୍ଗ, ଆଉ ଆମ ଭିତରେ ଦେଖା ହେବ କି ନାହିଁ ସନ୍ଦେହ ସବୁ ଦିନକୁ ମତେ ମନେ ରଖିଲା ଭଳି କାମଟିଏ କରିବ । କାଲି ତୁମେ ବିଦାୟ ନେଇ ଗଲାବେଳେ ବାପା ତୁମକୁ ସୁନା ରୁପା ଯାହା ଦେବେ

କିଛି ନେବନି । ମୋ ଦ୍ୱାରରେ ଏଇ ଯେଉଁ ପଥରଟି ଲାଗିଛି ସେଇ ଗୋଟିକୁ ମାଗିବ । ପଥରଟିଏ ସିନା ଦେଖୁଚ, ହେଲେ ଯାହାର ଗୁଣ ଅମାପ । ତୁମର ଯେତେବେଳେ ଯାହା ଦରକାର ମାଗିଲେ ସେ ସଙ୍ଗେ ସଙ୍ଗେ ଆଣିଦେବ । ତୁମର ଅଭାବ ଘୁଞ୍ଚିବ, ମୁଁ ତୁମର ଚିରକାଳ ମନେ ରହିବ । ହେଲେ ମନେ ରଖିଥା ଏ କଥା କାହାକୁ କହିବ ନାହିଁ ।"

ସତକୁ ସତ ସକାଳୁ ଗୀଟାରଟି ଧରି ରାଜାଙ୍କଠାରୁ ବିଦାୟ ନେଇ ବାହାରିଲେ ବେଳକୁ କେତେ ସୁନା ରୁପା ରାଜା ତା ସାଙ୍ଗରେ ଦେଲେ । ରାତିରେ ସାଙ୍ଗ କହିଥିବା କଥା ମନେ ପଡ଼ିଲାରୁ ସେ କେବଳ ସେଇ ପଥରଟି ମାଗିଲା । ରାଜା ପ୍ରଥମେ ଦୋଦୋପାଞ୍ଚ ହେଲେ ମଧ୍ୟ ଶେଷରେ ପୁଅ ବେକରୁ ସେଇଟି ଫିଟାଇ ତାକୁ ଦେଇଦେଲେ ।

ସାଙ୍ଗର ସ୍ମୃତିକୁ ଯତ୍ନରେ ଧରି ସେ ସାଗର ରାଜ୍ୟ ଛାଡ଼ିଲା । ଆଗରେ ବାଟ କଢ଼ାଇ ଚାଲିଥାଏ ସେଇ ଅନୁଚରଟି ଢେଉ ଭାଙ୍ଗି ଭାଙ୍ଗି ।

ଉପରେ ଆସି ପହଞ୍ଚିଲା ପରେ ସେ ତାଙ୍କର ଠିକଣା ହୋଇଥିବା ଜାଗାକୁ ଠିକ୍ ବାଟ ପାଇଗଲା । ଦିନ ରାତି ଧାଇଁ ଧାଇଁ ସେ ପହଞ୍ଚିଲା ସେଠି । ଭାଇ ଦୁହେଁ ଅପେକ୍ଷା କରି ବସିଛନ୍ତି । ତିନିଜଣଙ୍କର ଆନନ୍ଦ ଦେଖେ କିଏ ? ଭାଇମାନେ ଏତେଦିନ ପରେ ପରସ୍ପରକୁ ଭେଟି କୁଣ୍ଢିଆ କୁଣ୍ଢି ହୋଇ ଆନନ୍ଦରେ ବହେ କାନ୍ଦିଲେ । ତା ପରେ ଗୋଟିଏ ଗୋଟିଏ ଚାଲିଲେ ଘର ଆଡ଼କୁ ।

ତିନି ବର୍ଷ କାଳ ପିଲାଙ୍କୁ ନ ଦେଖି କାନ୍ଦି କାନ୍ଦି ମା'ର ଆଖିକୁ ଆଉ ଭଲ ଦିଶୁନି । ବାପ ମା' ପିଲାଙ୍କୁ ପାଖରେ ପାଇ ସ୍ୱର୍ଗ ହାତରେ ପାଇଲେ ।

ବଡ଼ ପୁଅ ଦୁହେଁ ଜଣେ ବଣିଆ କାମ ଓ ଜଣେ ଥଟାରି କାମ ଶିଖି ଆସିଛନ୍ତି ଶୁଣି ବାପା ଖୁସିହେଲେ । ହେଲେ ସାନ ପୁଅର କଥା ତାଙ୍କ ମନକୁ ପାଇଲା ନାହିଁ । ଥିଏଟର ପାର୍ଟିରେ କାମ କରି କିଏ ମଣିଷ ହେଲଣି ! ଯାହା ତା ଭାଗ୍ୟରେ ଥିବ ।

କେତେଦିନ ସୁଖରେ କଟିଗଲା । ବାପ ମା' ଦୁହେଁ ପିଲାଙ୍କୁ ଏକା କରିଦେଇ ଆଗ ପଛ ହୋଇ ସେପାରିକୁ ଚାଲିଗଲେ ।

ପରେ ପରେ ତିନି ଭାଇଙ୍କର ତିନି ବୋହୂ ଘରକୁ ଆସିଲେ । ସାନ ପୁଅ ଅରୋଜଗାରିଆ ବୋଲି ତାକୁ ଭାଉଜ ଦୁହେଁ ଅଲଗା କରି ଦବାର ମସୁଧା କରୁଥାନ୍ତି ।

କେତେ ଆଉ ଛୁ ଛୁକର ସହିବ ? ତା ସ୍ତ୍ରୀକୁ ଧରି ସେ ଘର ଛାଡ଼ି ବାହାରି ଗଲା । କିଛି କାଠ ବାଉଁଶ ଯୋଗାଡ଼ କରି ତାଙ୍କ ଘରଠାରୁ କିଛି ଦୂରରେ ପଡ଼ିଆ ମଝିରେ ଚାଳିଆ ଖଣ୍ଡେ ତିଆରି କରି ସ୍ୱାମୀ ସ୍ତ୍ରୀ ଦୁହେଁ ରହିଲେ । ଜଙ୍ଗଲରୁ କାଠ କାଟି ପାଖ ଗାଁରେ ବିକି କରି କୌଣସିମତେ ଗୁଜୁରାଣ ମେଣ୍ଟାନ୍ତି ।

ଥରେ ଝଡ଼ ବର୍ଷା ଲାଗି ରହିଥାଏ । ଘରୁ ତ ବାହାରିବାର ବାଟ ନାହିଁ, କାଠ କାଟିଯିବ କ'ଣ ? ଘରେ କିଛି ନାହିଁ ଭୋକରେ କରଡ଼ି ଜଳୁଚି । ଅଣ୍ଟାରେ କଳିଜା ଥରି ଯାଉଚି । ଛପରନ୍ତୁ ବର୍ଷା ପାଣି ପଡ଼ି ଘର ଓଦା—

ହଠାତ୍ ତାର ରଜାପୁଅ ଦେଇଥିବା ମେଜିକ୍ ପଥରଟି କଥା ମନେ ପଡ଼ିଗଲା । ତାକୁ ପରୀକ୍ଷା କରିବାକୁ ତା'ର ମନ ହେଲା । ଖୁସି ହୋଇ ସେ ତା ସ୍ତ୍ରୀକୁ ପାଖକୁ ଡ଼ାକି ପଚାରିଲା, "କଉ କ'ଣ ଖାଇବାକୁ ମନ, ଯାହା ଖାଇବାକୁ ମନ ହଉଚି କୁହ ଏଇଲେ ଆଣିଦେବି ।" ଉପାସ ଭୋକରେ ରହି ରହି ସ୍ତ୍ରୀର ମନ ତ ଚିଡ଼ା ଧରି ଯାଇଥିଲା, ପୁଣି ସ୍ୱାମୀର ଏ ଥଟ୍ଟା ଶୁଣି ସେ ଚିଡ଼ିଗଲା—ଭାତ ଗଣ୍ଡେ ଲୁଣ ଟିକେ ଯାହାକୁ ମିଳୁନି, ସେ ପୁଣି କ'ଣ ଖାଇବାକୁ ମନ ପଚାରୁଚି । ଆଉ ପଟକୁ ମୁହଁ ବୁଲେଇ ସେ ଶୋଇ ପଡ଼ିଲା ।

ପଥରଟିର ଗୁଣର ସତ ମିଛ ପରୀକ୍ଷା କରିବା ପାଇଁ ସେ ଲୁଚେଇ କରି ହାତରେ ତାକୁ ଧୀରେ ଧୀରେ ଘସିଲା ଓ ଚୁପ୍ ଚୁପ୍ କରି ତାକୁ କିଛି ଭାତ ମାଛ ମାଂସ ଆଣିଦେବା ଲାଗି କହିଲା । ଆଖି ପିଛୁଳାକେ ସେ କାବା ହୋଇ ଦେଖିଲା, ଗୋଟିଏ ହାତରେ ଭାତ ଓ ଅନ୍ୟ ହାତରେ ମାଛ ମାଂସର ଥାଳୀ ଦୁଇଟି ଧରି କେହି ଜଣେ ତା' ଆଗରେ ଉଭା ହୋଇ କହିଲା, "ନେ ନେରେ ସଇତାନ୍ ଖା, ଖାଇକରି ଦେଖ, କେମିତିଆ ମାଲ୍ ।" ତା' କଥା ଶୁଣି ସେଇ ଝାପ୍ସା ଆଲୁଅ ଭିତରେ ତାକୁ ଭଲ କରି ଚାହୁଁ ଚାହୁଁ ସିଏ ତୁ । କୁଆଡ଼େ ଉଭେଇ ଗଲା ଯେ ଆଉ ତା'ର ପତ୍ତା ନାହିଁ ।

ତା କଥା ପରେ ବୁଝାଯିବ । ଆଗ ପେଟ ଥଣ୍ଡା ହଉ । ସ୍ତ୍ରୀକୁ ଉଠାଇଲା । କେତେ ଦିନ ହେଲା ପେଟକୁ ଦାନା ଯାଇ ନ ଥିଲା, ପୁଣି ଏମିତିଆ ଖାଦ୍ୟ ତ କାହିଁ କେବେ ଖାଇଥିବାର ମନେ ପଡୁନ । ମନ ବୋଧ କରି ଦୁହେଁ ଖାଇଲେ । ପେଟ ପୂରିଲାରୁ ସ୍ତ୍ରୀଟିର ମୁହଁରୁ କଥା ବାହାରିଲା, "ମୁଁ ତ ଶୋଇ ପଡ଼ିଲି, ତୁମେ ତ ଏଇଠି ବସିଚ, ଏ ସବୁ ଆସିଲା କୁଆଡ଼ୁ ? ଚୋରି କଲ କି ଆଉ ? ନ ହେଲେ ଆମ ଘରେ ତ ଖୁଦ କଣାଟିଏ ନାହିଁ, ଏ ସବୁ ଜିନିଷ ମୋ ଅଜଣାତରେ ଆସିଲା କୁଆଡ଼ୁ ? ବାସନାରେ ଘର ମହକି ଯାଉଛି, ଗରମ, ଗରମ, ସତେକି କିଏ ଏଇଲେ ରାନ୍ଧି ଦେଇ ଯାଇଛି । ମତେ ତ ଏସବୁ ମେଜିକ୍ ପରି ଲାଗୁଛି ।"

"ସତରେ ମେଜିକ୍ ! ସ୍ୱାମୀଟି ପଥରକୁ ଦେଖାଇ ସବୁ ସତ କଥା କହିଦେଲା ।

ପେଟ ପୂରିଲାରୁ ରହିବାକୁ ଭଲ ଘର ଖଣ୍ଡେ ଦରକାର ହେଲା । ଘର ଦ୍ୱାର, ପୋଷାକ ପତ୍ର ଯାହା ଲୋଡ଼ା, ମେଜିକ୍ ପଥର ସବୁ ଅଭାବ ପୂରଣ କରିଦେଲା । ଏଣିକି ସେମାନେ ଖୁସିରେ ରହିଲେ ।

ଦିନେ ସକାଳେ ବଡ଼ ଭାଇ ତା' ଘର ଛାତ ଉପରେ ଚଢ଼ି ଭଙ୍ଗା ଟାଇଲ୍ ସବୁ ସଜାଉଛି, ଦେଖିଲା କେତେ ଦୂରରୁ ସାନ ଭାଇ ସୁନ୍ଦର ପୋଷାକ ପତ୍ର ପିନ୍ଧି ଘୋଡ଼ା ଉପରେ ଚଢ଼ି ତାଙ୍କର ଘର ଆଡ଼କୁ ମୁହେଁଇଚି । ବଡ଼ ଭାଇର ବିଶ୍ୱାସ ହେଲାନି । କି ଆଶ୍ଚର୍ଯ୍ୟ କଥା ତାକୁ ତ ଖାଇବାକୁ ମିଳୁ ନ ଥିଲା । ଏ ବେଶ ପୋଷାକ ପାଇଲା କେଉଁଠୁ ? ଚଞ୍ଚଳ ଚଞ୍ଚଳ ଛାତରୁ ଓହ୍ଲାଇ ଆସି ତା ତଳ ଭାଇକୁ ଡାକି କହିଲା, "ବୁଝିଲୁ ! ସାନ ଆମର ନିଶ୍ଚୟ ଡକାୟତ ଦଳରେ ମିଶିଲାଣି, ଦେଖିବୁ ଆ ! ନିଶ୍ଚୟ ଆମର ଘର ଲୁଟ୍ କରିବାକୁ ଘୋଡାରେ ବସି ଏଇଆଡ଼କୁ ଛୁଟି ଆସୁଛି ।" ଘରର ଝରକା କବାଟ ବନ୍ଦ କରିଦେଇ ସେମାନେ ଉପାୟ ଚିନ୍ତା କରିବାକୁ ଲାଗିଲେ । ସାନ ଭାଇକୁ ଦିନେ ସେମାନେ ଘରୁ ବାହାର କରି ଦେଇଥିଲେ, କିଏ ଜାଣେ ଆଜି ତା'ର କି ମତଲବ !

ସାନ ଭାଇ ଘର ଦୁଆର ମୁହଁରେ ଘୋଡ଼ାରୁ ଓହ୍ଲାଇ ପଡ଼ି କେତେ ଡାକିଲା । ଘର ଭିତର ଶୂନ୍‌ଶାନ୍ । କାହାରି ଜବାବ ନାହିଁ । କେତେ ସମୟ ପରେ ଆଉ ସମ୍ଭାଳି ନ ପାରି ବଡ଼ ଭାଇ ଭିତରୁ ପାଟି କଲା—

"ଚୋର ଡକାୟତ ! ତତେ ତ ଖାଇବାକୁ ମିଳୁ ନ ଥିଲା, ଚୋରି କରି ଘୋଡ଼ା ଚଢ଼ୁଛୁ, ସେଇଥିରେ ଏତେ ଫୁଟାଣି; ଏ ଘରେ ଚୋରର ସ୍ଥାନ ନାହିଁ । ପଳା ପଳା !"

ସାନ ଭାଇ କଅଁଳ ସ୍ୱରରେ ଦାଣ୍ଡରୁ ବୁଝେଇ ଲାଗିଲା । "ଭାଇ ! ମୁଁ ଚୋରି କରିବି କାହିଁକି ? ଦେଖିବ ଆସ ମୋ ପାଖରେ ଗୋଟେ ମେଜିକ୍ ପଥର ଅଛି । ସେଇ ମତେ ଧନୀ କରିଛି । ମତେ ଅବିଶ୍ୱାସ ହଉଛି ତ କବାଟ ଖୋଲି ଦେଖ ।"

"ମେଜିକ୍ ପଥର !" ଭାଇ ଦୁହେଁ କବାଟ ଖୋଲି ପଦାକୁ ଆସିଲେ । ସ୍ନେହ ଆଦରର ସୀମା ନାହିଁ । ସାନ ଭାଇ ଡ଼ାକରା ପାଇ ଘର ଭିତରକୁ ଗଲା ଓ ମେଜିକ୍ ପଥର କଥା ସବୁ ବୁଝେଇ କହିଲା । ବଡ଼ ଭାଇ ଦୁହେଁ ପଥରଟିକୁ ଦିନକ ପାଇଁ ତାଙ୍କୁ ଦେଇଯିବାକୁ କହିଲେ । ସାନ ମନରେ ତ ପିଲାଦିନୁ ଛନ୍ଦ କପଟ ନାହିଁ । ମନେ ମନେ ଭାବିଲା—ହଁ ଠିକ୍ କଥା ପଥରଟା କ'ଣ ସରି ଯାଉଛି ! ଭାଇମାନଙ୍କର କ'ଣ ଦରକାର ସେମାନେ ତାଠୁ ମାଗି ନିଅନ୍ତୁ ! ମୋର ଭାଇ ତ ।"

ପକେଟରୁ କାଢ଼ି ଟେବୁଲ ଉପରେ ଥୋଇ ଦେଲାବେଳକୁ ପଥରଟି ହଠାତ୍ ଦି ଖଣ୍ଡ ହୋଇଗଲା । ଖଣ୍ଡେ ଭାଇମାନଙ୍କୁ ଦେଇ ଅନ୍ୟ ଖଣ୍ଡକ ପକେଟରେ ପୂରେଇ କରି ସମସ୍ତ ଗପସପ କରିସାରି ଘରକୁ ଫେରିଲା ।

ବଡ଼ ଭାଇ ଦୁହିଁଙ୍କ ମନ ତ ଲାଗିଛି । ମୁହୂର୍ତ୍ତେ ସମସ୍ତ ଡେରି କରିବାକୁ ତାଙ୍କର ମନ ନୁହେଁ । ଘରର ଝରକା କବାଟ ବନ୍ଦ କରିଦେଇ ସେଇ ଅଧା ପଥର ଖଣ୍ଡକୁ ଜୋର୍‌ରେ ତଳେ ଘସି ଧନରତ୍ନ ମାଗିବାକୁ ଲାଗିଲେ ।

କାବା କଥା । ହଠାତ୍ ଗୋଟେ ଭୂତ ଆସି ତାଙ୍କ ଆଗରେ ଉଭା ହୋଇଗଲା ଓ ଟେବୁଲ୍ ଉପରେ ଗଦାଏ ସୁନା ମୋହର ଅଜାଡ଼ି ଦେଇ କହିଲା—"ନେ ନେରେ ମାଗେଣା ସଇତାନ୍ ! ମନ ଶାନ୍ତ ହେଲା ତ ?"

ସଇତାନ୍ ଡାକ ଶୁଣି ବଡ଼ ଭାଇର ମନ ଭାରି ଚିଡ଼ିଗଲା । "କଣ ହେଲା—ମୋର ଜମି ବାଡ଼ି ଘର ଦ୍ୱାର ସବୁ ଥାଇ ଭୂ କଏ ସେ ମତେ

ମାଟେଲ୍ରା କହବୁ, ପୁଣି କ'ଣ ନା ସଇତାନ୍ ! ଆଉ ଥରେ ଯଦି ଏ ପଦ ଉଚ୍ଚାରଣ କରିଚୁ ତୋର ଧନକୁ ମୋର ଧନେ । ତୁ ଧନ ବଳରେ ମୋ ନାମ ଇଜ୍ଜତ ନେଇଯିବୁ ଭାବଚୁ !"

ସେ ରାଗରେ ଏମିତି ବକର ବକର ହେବାରେ ଲାଗିଚି—ହଠାତ୍ ଖିଷଣ ଯୋରରେ ପବନ ବୋହୁ ଝରକା କବାଟ ସବୁ ଧଡ଼ଧାଡ଼୍ ହୋଇ ପଡ଼ିବାକୁ ଲାଗିଲା—ମୁହୂର୍ତ୍ତକ ଭିତରେ ଟେବୁଲ ଉପରେ ଜମା ହୋଇଥିବା ସୁନା ମୋହର ସବୁ କୁଆଡ଼େ ଉଭେଇ ଗଲା । ସେ ଗୁଣ୍ଡଟା ମଧ୍ୟ ପବନ ସଙ୍ଗେ ମିଶିଗଲା ଆଉ ଦିଶିଲା ନାହିଁ । ଥିଲା ଥିଲା ସେଇ ଅଧା ପଥରଖଣ୍ଡ ମଧ୍ୟ ଝରକାବାଟେ ସାଇଁକରି ଉଡ଼ି ଚାଲିଗଲା । ଭାଇ ଦିହେଁ ଭକୁଆ ଭଳି ଚାହିଁ ରହିଛନ୍ତି । ମୁହୂର୍ତ୍ତକ ଭିତରେ ସବୁ ଉଭେଇ ଯାଇ ଘର ଖାଲି ।

ଏଣେ ସାନ ଭାଇ ଖାଇ ବସିଚି । ଅଧା ପଥର ଖଣ୍ଡ ସାଇଁକରି ତାଙ୍କ ଝରକାବାଟେ ଘରେ ପଶିଲା । ଦୁଇ ତିନିଥର ତା ଚାରିପଟେ ସାଇଁ ସାଇଁ କରି ବୁଲି ଲାଗିଲା । ବାବା ହୋଇ ସ୍ୱାମୀ ସ୍ତ୍ରୀ ଦିହେଁ ଚାହିଁଛନ୍ତି । କଥା କ'ଣ ? ପଥର ଖଣ୍ଡକ ଘିରି ଘିରି କରି ଏମିତି ବୁଲୁଚି କାହିଁକି ? ସତେ କି କାହାକୁ ସେ ଖୋଜୁଚି । ଏମାନେ ଚାହିଁଛନ୍ତି । ହଜିଲା ଦରବ ତାକୁ ମିଳିଗଲା ପରି । ଆଉ ଅଧିକ ପକେଟରୁ ଭିତରୁ ଫଟ୍ କରି ବାହାରି ତା ସାଙ୍ଗରେ ମିଶିଗଲା ଓ ଦୁହେଁ ଦୁଇଟି ପ୍ରଜାପତି ପରି ଝରକା ବାଟେ ବାହାରକୁ ଉଡ଼ିଗଲେ । ଆଉ କି ଖିଆ, ସାନ ପୁଅ କବାଟ ଫିଟାଇ ତାଙ୍କ ପଛେ ପଛେ ଦୌଡ଼ିବାକୁ ଲାଗିଲା ।

ସେମାନେ ଉଡ଼ି ଉଡ଼ି ଯାଇ ସମୁଦ୍ର କୂଳରେ ପହଞ୍ଚିଲେ । ସାନ ପୁଅ ଠିଆହୋଇ ଚାହିଁଚି । ଆହୁରି ଅଚମ୍ବିତ କଥାଟିଏ ଘଟିଲା । ସତେକି କେହି ଜଣେ ତାକୁ କୋଉଦିନୁ ଅପେକ୍ଷା କରି ରହିଥିଲା । ଉଡ଼ି ଉଡ଼ି ଯାଇ ପଥର ଦି ଖଣ୍ଡ ସମୁଦ୍ର ଭିତରକୁ ଡେଇଁପଡ଼ି ଢେଉ ସାଙ୍ଗରେ ମିଳେଇ ଗଲେ ।

ସମୁଦ୍ର ରଜା ପୁଅର କଥା ତା'ର ମନେ ପଡ଼ିଗଲା, "ସାଙ୍ଗ, ପଥରଟିଏ ସିନା, ଗୁଣ ଅମାପ, ତୁମ ଅଭାବ ବୁଝିବ । ଏ କଥା କାହାକୁ କହିବ ନାହିଁଟି ?"

ଏତିକ ସେ ରଖିପାରିଲାନି । ନିଜକୁ ଧିକ୍କାର ଲାଗିଲା ସେ । ନିଜ ବୋକାମୀରୁ ଚିରଦିନ ଲାଗି ସାଙ୍ଗର ସ୍ମୃତିରୁ ବିଚ୍ଛିନ୍ନ ହେଲା । ସୁଖ ସୁବିଧାରୁ ମଧ୍ୟ ବଞ୍ଚିତ ହେଲା ।

ଆଉ ଭାବିଲେ କି ଥାଏ ! ମନ ଦୁଃଖରେ ଘରକୁ ଫେରିଲା ।

# ସାପ ସଙ୍ଗାତ

ଛୋଟ ପିଲାଟିଏ । ସ୍କୁଲରୁ ଫେରିବା ବାଟରେ ଦେଖିଲା ରାସ୍ତାରେ ଛୋଟିଆ ଦୁଇ ତିନ ଇଞ୍ଚ ଲମ୍ବର ସାପ ଛୁଆଟାଏ ପଡ଼ିଛି । ତା' ଦେହରୁ ରକ୍ତ ବୋହି ଯାଉଛି, ହେଲେ ସେ ମରିନି । ପିଲାଟିର ମାୟା ହେଲା । ଆହା ! କେତେ କଷ୍ଟ ପାଉଥିବ । ଯତ୍ନ କଲେ ବଞ୍ଚିଯିବ ବୋଧେ । ମା' ପାଖକୁ ନେଇଗଲେ ମା' ନିଶ୍ଚୟ ତା' କଥା ବୁଝିଦେବ, ଏଇ ବିଶ୍ୱାସରେ କାଳି ବୋତଲକୁ ଖୋଳରୁ କାଢ଼ି ଦେଇ କାଗଜ ଖୋଳ ଭିତରେ ଯତ୍ନରେ ଦରମଲା ସାପ ଛୁଆଟିକୁ ପୂରେଇ ତରତରରେ ଘର ମୁହାଁ ହେଲା ।

ଅଳ୍ପଦିନ ହେଲା ତା' ବାପା ମରି ଯାଇଥା'ନ୍ତି । ମା'ର କେତେ ଆଶା, ସେଇ ତ ଗୋଟିଏ ବୋଲି ପୁଅ । ପାଠ ପଢ଼ି ବଡ଼ ମଣିଷ ହେବ ।

ଘର ପାଖ ହୋଇ ଆସିଲା । ସ୍କୁଲରୁ ଫେରିବାରେ ଡେରି ଦେଖି ମା' ଦାଣ୍ଡରେ ପୁଅର ବାଟକୁ ଚାହିଁ ଠିଆ ହୋଇଛନ୍ତି । ଦୂରରୁ ତାଙ୍କୁ ଦେଖିପାରି ପୁଅଟିର ମନ ଭାରି ବ୍ୟସ୍ତ ହେଲା । ଆହା ବିଚାରି ! କେତେ-ବେଳୁ ଠିଆହୋଇ ଥିବେଣି ।

ଏଇ କଥା ଭାବୁ ଭାବୁ ଆସି ମା' ପାଖରେ ହାଜର ହୋଇଗଲା । ମା'ଙ୍କୁ ଡେରି ହେବାର କାରଣ କହିଦେଲା । ସାପର ଯତ୍ନରେ ମା' ଓ ପୁଅ ଲାଗିପଡ଼ିଲେ । ଅଳ୍ପ କେତେଦିନ ଭିତରେ ଆଦର ଯତ୍ନ ପାଇ ସାପଟି ଭଲ ହୋଇଗଲା । ତା' ଗୃହାଣୀରୁ ସେ ତା ମାଲିକକୁ ଠିକ୍ ଚିହ୍ନିଲାଣି ବୋଲି ଜଣାଗଲା । ପିଲାଟି ସବୁଦିନେ କାଳି ବୋତଲ ଖୋଳରେ ପୂରେଇ ତାକୁ ସ୍କୁଲକୁ ନିଏ । କି ଦିନ କି ରାତି ତାକୁ ପାଖେ ପାଖେ ରଖିଥାଏ ।

ଧୀରେ ଧୀରେ ସାପଟି ବଡ଼ ହୋଇଗଲା । ଏତେ ବଡ଼ ସାପଟାକୁ ସ୍କୁଲକୁ ନେବା ଆଣିବା ପିଲାଟି ପକ୍ଷେ ସମ୍ଭବ ହେଲାନି । ତା' ଛଡ଼ା ସ୍କୁଲରେ ପିଲାମାନେ ଏତେ ବଡ଼ ସାପଟିକୁ ଦେଖି ଡରିଲେ । ପିଲାଟି ଘରେ ତା ପଢ଼ା ଟେବୁଲର ଡ୍ରୟର୍‌ରେ

ତାର ରହିବାର ଜାଗା ଠିକଣା କଲା । ସ୍କୁଲ ଯିବା ପୂର୍ବରୁ ତାକୁ ଖାଇବାକୁ ଦେବାକୁ ପିଲଟି ତାକୁ କାଢ଼େ । ଖୁସି ମନରେ ଫଣା ଟେକି ତା' ଖାଦ୍ୟ ଖାଇସାରି ପୁଣି ତା' ଜାଗାରେ ଚୁପ୍‌ଚାପ୍ ସେ ଶୋଇପଡ଼େ । ଦିନେ ହେଲେ ତା'ର ଅବାଧ୍ୟତାର ଲକ୍ଷଣ ନାହିଁ । କେବେ କେବେ ଖାଇବାକୁ ଦେବାରେ ଡେରି ହେଲେ ଗର୍ଜନ ଶୁଭେ ଡ୍ରୟାର୍ ଭିତରୁ । ତା' କଥା କଣ ସେମାନେ ଭୁଲି ଗଲେଣି କି ? ତାକୁ ଆଜି ଖାଇବାକୁ ଦେବେନି କି ? ଟିକେ ଡ୍ରୟାର୍ ଖୋଲି ତାକୁ ଖାଇବାକୁ ଦେଇ ଆଉଁଶି ଦେଲେ ପୁଣି ଚୁପ୍ ।

ସ୍କୁଲର ଶେଷ ପରୀକ୍ଷା ଦେବାପାଇଁ ସହରକୁ ଯିବାର ବେଳ ଆସିଲା । ପିଲଟି ସାଙ୍ଗମାନଙ୍କ ସାଙ୍ଗରେ ସହରକୁ ଯିବାକୁ ପ୍ରସ୍ତୁତ ହେଲା । ସହର ତାଙ୍କ ଗାଁ ଠାରୁ ବହୁତ ଦୂର । ଗାଡ଼ି ମଟରର ବି ସୁବିଧା ନାହିଁ । ଚାଲି ଚାଲି ଯିବାର କଥା । ରାସ୍ତା ପୁଣି ବଡ଼ ଦୁର୍ଗମ । ଦଳ ଦଳ ପିଲା ମଫସଲମାନଙ୍କରୁ ଯାଉଥାନ୍ତି । ତା'ର ରହିବାର ସମସ୍ତ ବନ୍ଦୋବସ୍ତ କରିସାରି ବାହାରୁ ବାହାରୁ ପିଲଟିର କିଛି ଦିନ ଡେରି ହୋଇଗଲା । ତାଙ୍କ ଆଖ ପାଖ ଗାଁର ପିଲେ ଚାଲିଗଲେଣି । ବାଧ୍ୟ ହୋଇ ଏକା ଏକା ସେ ବାହାରି ପଡ଼ିଲା । ଆଶା ଥାଏ ବାଟରେ ସେମାନଙ୍କୁ ଭେଟିବ ନାହିଁ କି ? ଡର କ'ଣ ? ବାଟ ପାଇଁ ଜଳଖିଆ ପୁଟୁଳିଟିଏ ଆଉ କିଛି ଟଙ୍କା । ମା' କେତେ ପ୍ରକାର ଟୁକୁରା ଟାକୁରା ଜଳଖିଆର ପୁଟୁଳାଟିଏ ବାନ୍ଧି ଦେଇଥାଏ । ଯିବାର ସବୁ ଯୋଗାଡ଼ ଯନ୍ତ୍ର କରି ସାରିଲା ପରେ ସାପଟି କଥା ତା' ମନକୁ ଆସିଲା । ତାକୁ ଏତେଦିନ ଏକା ଛାଡ଼ିଦେଇ ଯିବାକୁ ତା'ର ମନ ହେଲାନି । କାଳେ ସେ ତାକୁ ଝୁରିବ । ତାକୁ ମଧ୍ୟ ସେ ସାଙ୍ଗରେ ନେବାପାଇଁ ଠିକ୍ କଲା । ସାଙ୍ଗ ପାଇଁ ଆଉ ଗୋଟାଏ ଅଧିକା ବୋଝ ସେ ଖୁସିରେ ବୋହିଲା ।

ଚାଲି ଚାଲି ମାସେ ବିତିଗଲା । ଦିନେ ବାଟରେ ଗୋଟେ ପାହାଡ଼ ପାଖରେ ପହଞ୍ଚିଲା । ଡେଇଁ ଡେଇଁକା ପାହାଡ଼, ଘନ ଜଙ୍ଗଲ···ତା' ମନ ଦବିଗଲା । ଅତି କମ୍‌ରେ ଦଶଦିନ ଲାଗିବ ଏ ଜଙ୍ଗଲ ପାହାଡ଼ ଟପିବାକୁ । ଆରପଟକୁ ଗଲେ ଗାଁ ଖଣ୍ଡେ—ସହର ସେଠୁ ଅଳ୍ପ ବାଟ । କ'ଣ ଅଛି ତା' ଭାଗ୍ୟରେ କିଏ ଜାଣେ ? ପରୀକ୍ଷା ଦିନ ପାଖେଇ ଆସିଲାଣି ! ସତରେ

ସେ ଏ ଜଙ୍ଗଲ ଟପି ଆରପଟ ସହରରେ ପହଞ୍ଚି ପାରିବ । ଠିକ୍ ସମୟରେ ପରୀକ୍ଷା ଦେଇସାରି ମା' ପାଖକୁ ଫେରି ପାରିବ ତ ? ତା'ର ନିଜ ଉପରେ ସନ୍ଦେହ ହେଲା । ଭଗବାନ ଭରସା !

ପଥର ଖଣ୍ଡେ ଉପରେ ବସି ଏମିତି ଭାବି ଲାଗିଛି, ଦେଖିଲା ସାପଟି ତା' ପେଡ଼ି ଭିତରୁ ଚୁପ୍‌ଚୁପ୍ ବାହାରି ଆସି ତା' ପାଖରେ ପହଞ୍ଚିଲା । ତାକୁ ପାଖରେ ଦେଖି ପିଲାଟିର ମାୟା ହେଲା । ଭାରି ଦୁଃଖରେ ତାକୁ ଆଉଁସି ଦେଇ କହିଲା—"ଦେଖ ଭାଇ ! ଏତେବାଟ ଆଣିଲି, ହେଲେ ଆଜି ତତେ ଛାଡ଼ିବାର ବେଳ ହେଲା । ଏ ଜଙ୍ଗଲ ଦେଖି ପାରୁଛୁ ତ ? ସତେ ମୁଁ ଯାକୁ ପାରି ହେବି ? ଯଦି ବାଟରେ ପଡ଼ି ମରିଯାଏ, ତେବେ ତୁ ତ ତୋ ପେଡ଼ି ଭିତରେ ରହିଯିବୁ । ଖାଇବାକୁ ନ ପାଇ ତୁ ମଧ୍ୟ ଶୁଖି ମରିଯିବୁ । ବରଂ ତୁ ଏଠୁ ଚାଲିଯା । ଜଙ୍ଗଲରେ ଆନନ୍ଦରେ ରହିବୁ । ଯଦି ଭଗବାନଙ୍କର ଇଚ୍ଛାଥାଏ, ମୁଁ ପୁଣି ଏଇବାଟେ ଫେରିଲେ ତତେ ସାଙ୍ଗରେ ଘରକୁ ନେଇଯିବି । ସାପ ଫଣା ଟେକି ଠିଆ ହୋଇ ରହିଥାଏ । ସତେ କି ମଣିଷର କଥା ସେ ସବୁ ବୁଝି ପାରିଲା । ପିଲାଟି ଦେହରେ ଟିକେ ଘସି ହୋଇଗଲା ଓ ମଝିରେ ମଝିରେ ପଛକୁ ଫେରି ଚାହିଁ ଚାହିଁ ଜଙ୍ଗଲ ଭିତରକୁ ଚାଲିଗଲା ।

ପିଲାଟିର ସ୍ୱଭାବ ପ୍ରକୃତରେ ଠିକ୍ । ଦଶଦିନ ଲାଗି ବାଟରେ ବହୁ କଷ୍ଟ ସହି ଯାଇ ଆରପଟ ଗାଁରେ ପହଞ୍ଚିଲା । ସହର ଆଉ ଅଳ୍ପ ବାଟ । ରାତି ହୋଇ ଯାଇଥାଏ । ରାତିଟା ସେଇ ଗାଁରେ କଟେଇ ଦେବାର ଠିକ୍ କରି ରହିବା ପାଇଁ ଜାଗାଟିଏ ଖୋଜିଲା ।

ଏଠୁ ସେଠିକି, ସେଠୁ ଏଠିକି ହୋଇ ସାରା ଗାଁ ସେ ବୁଲିଲା । ହେଲେ ରାତିଟା କଟେଇବା ପାଇଁ କୋଉଠି ହେଲେ ଘର ଖଣ୍ଡେ ତାକୁ ମିଳିଲା ନାହିଁ । ସହରକୁ ପରୀକ୍ଷା ଦେବାପାଇଁ ଯାଉଥିବା ପିଲାଏ ଆଗରୁ ଆସି ସବୁ ଘରେ, ଧର୍ମଶାଳାମାନଙ୍କରେ ରହି ଯାଇଥିଲେ । କେତେ ଆଉ ରାତିଟାରେ ବୁଲି ବୁଲି ଘର ଖୋଜିବ ? ମାସାଧିକ କାଳ ତ ରାସ୍ତାରେ କଟି ଗଲାଣି, ଆଉ ଆଜି ରାତିଟା ପାଇଁ ଏତେ ଚିନ୍ତା ? ଆଗରେ ଗୋଟେ ଧର୍ମଶାଳା ପଡ଼ିଲା । ଶେଷ ଚେଷ୍ଟା କରିବା ପାଇଁ ବାରଣ୍ଡା ଉପରକୁ ଉଠି ଯାଇ ସାମନାରେ ଠିଆ ହୋଇଥିବା ଚାକରଟିକୁ ରାତିଟା କଟେଇବା

ପାଇଁ ବଖରାଟିଏ ଯୋଗାଡ଼ କରିଦେବାକୁ ବିକଳ ହୋଇ କହିଲା । ଚାକରଟି ତା' ବିକଳିଆ ମୁହଁକୁ ଚାହିଁ କହିଲା, "ହଁ, ଗୋଟିଏ ବଖରା ଖାଲି ଅଛି, ହେଲେ ସେଠି କେହି ଆଜିପର୍ଯ୍ୟନ୍ତ ରାତି କଟେଇବା କଥା ମୁଁ ଜାଣେନା । ଲୋକ କୁହନ୍ତି ସେଠି ଯେ ରାତିରେ ରୁହେ, ସେ ସକାଳକୁ ମରି ଶୋଇଥାଏ । ତୁମେ ଯଦି ରହିବ ରୁହ, ହେଲେ ମତେ ଆଉ ଦୋଷ ଦେବନି ।"

ପିଲାଟିର ତ ଭୂତ ପ୍ରେତକୁ ଡ଼ର ନାହିଁ । ଏଣେ ବାଟ ଚାଲିବାର ବାଧା—ତେଣେ ପରୀକ୍ଷା ଚିନ୍ତା । ସେ ସାଙ୍ଗେ ସାଙ୍ଗେ ରାଜି ହୋଇଗଲା । ଚାକରଟି ଘରଟି ଖୋଲି ଦେଇ ଚାଲିଗଲା । ଶୀଘ୍ର ଖାଇ ପିଇ ସାରି ସେ ବିଛଣା ଧରିଲା ।

ଯେତେବେଳେ ସବୁଆଡ଼ ଶୁନ୍‌ଶାନ୍ ହୋଇଗଲା, ଭୂତ ଚିନ୍ତା ତାକୁ ଘାରିଲା । ମନକୁ ବୁଝାଇଲେ ମଧ୍ୟ ତାକୁ ଡର ଡର ମାଡୁଥାଏ । ଯଦି ସତରେ କିଛି ହୋଇଥାଏ, ମିଛଟାରେ ତା' ଜୀବନ ଯିବ । ଘର କଥା ମନେ ପଡ଼ିଗଲା । ତାକୁ ବିଦାୟ ଦେଲାବେଳର ମା'ର ବିକଳିଆ ମୁହଁ ଖାଲି ମନେ ପଡ଼ି ଯାଉଥାଏ । ସେ ଯଦି ନ ଫେରେ କାନ୍ଦି କାନ୍ଦି ମା' ତା'ର ଅନ୍ଧୁଣୀ ହୋଇଯିବ । ତାକୁ ହରେଇ ସେ କ'ଣ ଆଉ ବଞ୍ଚିବ ? ମନକୁ ବୁଝାଇଲା—ଭାଗ୍ୟରେ ଯା' ଥିବ, ତା' ତ ନିଶ୍ଚୟ ଫଳିବ । ଠାକୁରଙ୍କୁ ଡାକି ଡାକି ନଦୁଆ ଦେହଟାକୁ ଖଟ ଉପରେ ମେଲାଇ ଦେଲା ।

ରାତି ଅଧ ହୋଇଥିବ । ତା' ନିଦ ଭାଙ୍ଗିଗଲା । ଘର ଭିତର ତ ଚୂପ୍‌ଚାପ୍ । ବାହାରେ ଭୀଷଣ ଝଡ଼ ବହୁଥାଏ । ଘର ଭିତରେ ଜଳୁଥିବା ମହମବତୀଟି ଜଳି ଜଳି ସରି ଆସିଲାଣି । ପବନ ହେଲେ ଆଉ ଟିକକରେ ବୋଧେ ଲିଭିଯିବ । ହଠାତ୍ ପବନର ବେଗ ବଢ଼ିଗଲା ଓ ବନ୍ଦ ଥିବା ସବୁ ଝରକା କବାଟ ଧଡ଼୍ ଧାଡ଼୍ କରି ଖୋଲିଗଲା । ପବନର ଧକ୍କା ସହି ନ ପାରି ମହମବତୀଟି ଲିଭିଗଲା ।

ବାହାରେ କ'ଣ ହେଉଛି ଦେଖିବା ପାଇଁ ସେ ଖଟ ଉପରୁ ଉଠିଆସି ଉରି ଉରି ଝରକା ପାଖରେ ଠିଆ ହେଲା । ବାହାରେ ତ ଝଡ଼ର ତାଣ୍ଡବଲୀଳା ।

ହଠାତ୍ ଗୋଟିଏ ଅଦ୍ଭୁତ ଦୃଶ୍ୟରେ ତା' ଆଖି ବୁଜା ହୋଇଗଲା ଭୟରେ । ଏ କ'ଣ ସେ ଦେଖୁଛି ? ଗୋଟେ ବଡ଼ଟକାୟ ଜନ୍ତୁ ତା'ର ଝରକା ଆଡ଼କୁ ଖର ବେଗରେ ଉଡ଼ି ଆସୁଛି ସେଇ ଅନ୍ଧାର ଭିତରେ । ପୁଣି ତା' ପଛେ ପଛେ ଆଉଗୋଟାଏ କ'ଣ ଭୟଙ୍କର ଜୀବ ତାକୁ ଗୋଡ଼େଇଛି ।

ସେ ଝରକା ଛାଡ଼ି ଦୂରକୁ ଘୁଞ୍ଚିଗଲା । ଗୋଡ଼ଆ ଗୋଡ଼ ହୋଇ ଭୟଙ୍କର ଜନ୍ତୁ ଦୁଇଟା ତା'ର ଝରକା ବାଟ ଦେଇ ଘର ଭିତରକୁ ପଶି ଆସିଲେ ଓ ତା'ର ଖଟ ପାଖରେ ତାଙ୍କର ଆରମ୍ଭ ହୋଇଗଲା ଭୟଙ୍କର ଲଢ଼େଇ ! ସେ ଆଖି ବୁଜି ଦେଇ କାନ୍ଥକୁ ଲାଗି ଗୋଟିଏ କଣରେ ଲେସି ହୋଇ ଠିଆ ହୋଇଥାଏ ଓ ଭୟରେ ଥରୁଥାଏ । ଦୁଇ ଜନ୍ତୁଙ୍କ ଗର୍ଜନରେ କାନ ଅତଡ଼ା ପଡ଼ୁଥାଏ । ଧୀରେ ଧୀରେ ସେ ଗର୍ଜନର ସ୍ୱର କମି ଆସିଲା । ଯେତେବେଳେ ସେ ସ୍ୱର ଆଉ ମୋଟେ ଶୁଭିଲା ନାହିଁ, ସେ ଆଖି ଖୋଲି ଚାହିଁଲା ।

ସିନ୍ଦୂର ଫାଟି ଆସିଲାଣି । ସେଇ ଝାପ୍ସା ଆଲୁଅରେ ସେ ଦେଖି ପାରିଲା ସେଇ ବଡ଼ଟ ଜନ୍ତୁ ଦୁଇଟା ସ୍ଥିର ହୋଇ ତା' ଖଟ ପାଖରେ ଛନ୍ଦାଛନ୍ଦି ହୋଇ ପଡ଼ିଛନ୍ତି । ସେମାନଙ୍କ ଦେହ ସ୍ଥିର । ଧୀରେ ଧୀରେ ସାହସ କରି ସେ ପାଖକୁ ଗଲା ।

ସେ ଦୃଶ୍ୟ ଦେଖି ତା' ଦେହ ଶୀତେଇ ଉଠିଲା । ଗୋଟିଏ ବଡ଼ଟ ସାପ ଆଉ ଗୋଟାଏ କି ଭୟଙ୍କର ଅଦ୍ଭୁତ ଜନ୍ତୁ ! ତାର ଲକ୍ଷ ଲକ୍ଷ ଗୋଡ଼; ଏତେ ବଡ଼ ପାଟି, ସତେ କି ମଣିଷ ଗିଳିଦବ । ଦୁହିଁଙ୍କ ଦାନ୍ତ ଦୁହିଁଙ୍କ ଦେହରେ ଜାବ ପଡ଼ିଯାଇଛି । ଦୁହେଁ ମରି ଶୋଇଛନ୍ତି । ଭଲ କରି ସେ ଚିହ୍ନିଲା, ସାପଟି ତା'ର—ମନ ତା'ର ଦୁଃଖରେ ଭାଙ୍ଗି ପଡ଼ିଲା । ସେ ଭେ ଭେ ହୋଇ କାନ୍ଦିବାକୁ ଲାଗିଲା । ସେ ଠିକ୍ ଜାଣି ପାରିଲା ତାକୁଇ ବଞ୍ଚେଇବାକୁ ଯାଇ ସାପଟି ସେଇ ଭୟଙ୍କର ଜନ୍ତୁଟି ହାତରେ ପ୍ରାଣ ଦେଲା ।

ଏତେ ବର୍ଷ ହେଲା କେତେ ଯତ୍ନରେ ପାଳିଥିଲା ତାକୁ ସେ । ତାର ଏମିତିଆ ମରଣ ତାକୁ ଦେଖିବାକୁ ଥିଲା ? ଆଉ ସବୁଦାକୁ ବେଳ

ନାହିଁ । ପରୀକ୍ଷା ପାଇଁ ସହରକୁ ଯିବାକୁ ହେବ । ମଲା ସାପଟିକୁ ସେଇ ଧର୍ମଶାଳାର ବଗିଚାରେ ପୋତି ଦେଇ ସେ ପରୀକ୍ଷା ଦେବାକୁ ଚାଲିଗଲା ।

ପରୀକ୍ଷା ଭଲରେ ଭଲରେ ସରିଗଲା । ଫେରିଲା ବାଟରେ ତା'ର ମନେ ପଡ଼ିଲା, ଜଙ୍ଗଲରେ ସାପକୁ ଛାଡ଼ିଲା ଦିନ ତାକୁ କହିଥିଲା, "ଯଦି ମୁଁ ସତରେ ଫେରେ, ତତେ ନେଇ ଗାଁକୁ ଯିବି ।" ସେ କଥା ସେ ରଖିଲା । ଜୀଅନ୍ତା ସାପକୁ ଫେରେଇ ନେବା ଯିନା ତା' ଭାଗ୍ୟରେ ଜୁଟିଲାନି, ହେଲେ ମଲା ସା ପକୁ ଗାତରୁ ବାହାର କରି ଯତ୍ନରେ ଗୁଡ଼େଇ ଧରି, ସାଙ୍ଗରେ ନେଇ ଗାଁରେ ପହଞ୍ଚିଲା ।

ପୁଅକୁ ଫେରି ଆସିବା ଦେଖି ମା'ର ସେ କି ଆନନ୍ଦ ! ସାପଟିର ମୃତ୍ୟୁ ଖବର ପାଇ ସେ ମନ ଦୁଃଖ କରି କହିଲେ—"ସେ ତୋର ରକ୍ଷାକବଚ ହୋଇ ଆଜିଯାଏ ଥିଲା । ଏଇ ଘାଟିରୁ ଉଦ୍ଧାର ପାଇଁ ଆମ ଘରେ ଆସି ସେ ଜୁଟିଥିଲା । ତା' କାମ ସରିଗଲା ଆଉ ସେ କାହିଁକି ରହନ୍ତା ?"

ପିଲାଟି ନିଜ ଘର ଆଗରେ ତା' ଲାଗି ସୁନ୍ଦର କବରଟିଏ ତିଆରି କରି ତାକୁ ସେଠି ପୋତିଲା ଓ ମଣିଷ ପରି ତା' ଲାଗି ଶ୍ରାଦ୍ଧ ତର୍ପଣ ମଧ୍ୟ କଲା ।

ସକାଳୁ ଉଠି ଆଗ ସେଇ କବର ପାଖକୁ ଆସିବା ମା' ପୁଅ ଦୁହିଁଙ୍କର ଅଭ୍ୟାସ । ପିଲାଟିକୁ ଲାଗେ ଯେମିତି ସେଇ ବଣ୍ଯୁ ଜୀବଟିର ଆଶୀର୍ବାଦ ପାଇଲେ ତା'ର ଦିନ ଭଲରେ କଟିବ । ତା' ଲାଗି ସେ କବର ତୀର୍ଥକ୍ଷେତ୍ର ହୋଇଗଲା ।

* * *

# ଦୟାଳୁ ଭୂତ

ଜଙ୍ଗଲ ଭିତରେ ନଈଟିଏ ବୋହି ଯାଉଛି । ତା'ର କୂଳରେ ଛୋଟିଆ କୁଡ଼ିଆ ଘରଟିଏ । ଦାଣ୍ଡ ବାଡ଼ କେଡ଼େ ସୁନ୍ଦର ଲିପା ପୋଛା ହୋଇ ଚକ୍‌କଣ । ସେଇ ଘରେ କେଉଟଟିଏ ତା' ସ୍ତ୍ରୀ ଓ ପିଲାଙ୍କୁ ଧରି ଥାଏ । କେଉଟଟି ଭାରି ନିରୀହ ସରଳିଆ ଲୋକ । କାହାରି ଭଲରେ ମନ୍ଦରେ ନ ଥାଏ । ସକାଳ ହେଲେ ତା' ଜାଲ୍ ଭଲି ତ ସେ ଭଲି । ଖାଲେଇ ଜାଲ ଧରି ନଈକୁ ଗଡ଼ିବ ଯେ, ଫେରୁ ଫେରୁ କେତେବେଳେ । ଦିନ ସାରା ଅକ୍ଳାନ୍ତ ପରିଶ୍ରମ—ମାଛ ଯାକ ନେଇ ସହରରେ ବିକି ସଉଦାପତି କରି ଘରକୁ ଫେରେ । ଯାହା ପଇସା ପାଏ, ସେମାନେ ଦୁଃଖେ ସୁଖେ ଚଳିଯା'ନ୍ତି ।

ସ୍ୱାମୀ ସ୍ତ୍ରୀ ଦୁହେଁ ପରସ୍ପରକୁ ଭଲପା'ନ୍ତି । ତାଙ୍କ ଘରୁ କେବେ କଳି କଜିଆ ପାଟିତୁଣ୍ଡ ଶୁଭେନି । ଦିନ ସାରା ପାଣିରେ ବୁଡି ବୁଡ଼ି ସନ୍ଧ୍ୟାକୁ ଫେରିଲେ ସ୍ତ୍ରୀ ଗରମ ତେଲ ତା' କନ୍ଦା ଖାଇଥିବା ପାଦରେ ଘଷିଦିବ । ଖାଇପିଇ ଦୁହେଁ ଯାଇ ଦାଣ୍ଡରେ ବସିବେ । ନଈ ଅଠଡ଼ ଉପରେ ଘର । ଆରମ୍ଭ ହୋଇଯିବ ଦିନ ସାରାର ଗପ । ସବୁଦିନେ ସେଇ ଏକା ଅନୁଭୂତି । କେମିତିଆ ମାଛ କୋଉଠି ଉଠିଲେ, କେମିତି ଧରା ପଡ଼ିଲେ ଓ ଶେଷରେ କେତେ ଦାମ୍‌ରେ ବିକା ହେଲା । ସ୍ତ୍ରୀଟି ସବୁଦିନେ ସେଇ କଥା ଶୁଣିଲେ ବି କେତେ ଆଗ୍ରହରେ ଶୁଣୁଥାଏ । ତାଙ୍କ ଭିତରେ କିଛି ଛନ୍ଦ କପଟ, ଲୁଚ୍ଛ ଛପା ନାହିଁ । ସୁଖରେ ତାଙ୍କ ଦିନ କଟି ଯାଉଥାଏ ।

ଥରେ କ'ଣ ହେଲା କେଜାଣି, ମାଛମାନେ ସତେ କି ନଈରୁ କୁଆଡ଼େ ଉଭେଇ ଗଲେ । ଦିନେ, ଦିଦିନ, ତିନିଦିନ, ଚାରିଦିନ ମଧ୍ୟ ଗଲା ସବୁଦିନେ ସକାଳୁ ଯାଇ ସେ ରାତିକି ଘରକୁ ଖାଲି ଖାଲେଇ ଓ ଜାଲ ଧରି ଫେରିଲା । ତା' ମନଟା ବି ଚଟା ହୋଇଗଲା । ଏତେ ପରିଶ୍ରମ ବାଏ ବାଏ ଉଡ଼ିଯାଉଛି ? ନିତି ଅର୍ଜିଲେ ହାଣ୍ଡିରେ ଚାଉଳ ପଡ଼ିବା ବ୍ୟବସ୍ଥା ତାଙ୍କର । ଚାରିଦିନ କାଳ ଉପାସ ଭୋକରେ ନିଜେ ତ

ରହୁଛି, ହେଲେ ସ୍ତ୍ରୀ ପିଲାଙ୍କ ମୁହଁକୁ ଚାହିଁଲେ ତାକୁ ବିକଳ ଲାଗୁଥାଏ । ଏମିତି ଅବସ୍ଥା ତାଙ୍କର କେବେ ତ ହୋଇ ନ ଥିଲା । ପ୍ରଥମେ ପ୍ରଥମେ ସ୍ତ୍ରୀ ମୁହଁ ହାଣ୍ଡି କଲା । ଧୀରେ ଧୀରେ ଅବସ୍ଥା ବଦଳେଇଲା । ପିଲାଙ୍କ ଭୋକ ବିକଳ ଆଉ ସହ୍ୟ ହେଲାନି । ସ୍ୱାମୀର ଅପାରଗତା ଯୋଗୁଁ ତା ଉପରେ ବିରକ୍ତ ହେବାକୁ ଲାଗିଲା । ସ୍ୱାମୀଟି ବିଚରା କରେ କ'ଣ ? ଚୁପ୍ ଚାପ୍ ବସି ଜାଲ ବୁଣିବାରେ ମନ ଦିଏ ।

ଚତୁର୍ଥ ଦିନ ରାତି । ବାହାରେ ବର୍ଷା କୁଟୁଛି । ଭୋକରେ ତ କରଡ଼ ଜଳୁଛି । ନିଦ ହଉଚି କୁଆଡ଼ୁ ? ସେ ବାହାର ପଟ ଘର ଖଟ ଉପରେ ପଡ଼ି ଛଟପଟ ହେଉଥାଏ । ଆଉ ଘରେ ପିଲାଗୁଡ଼ିକ ଭୋକରେ ଆଲାଜା ଦେଇ ଶୋଇ ପଡ଼ିଛନ୍ତି ମା' ପାଖରେ । ହଠାତ୍ କବାଟରେ ଠକ୍ ଠକ୍ ଶବ୍ଦ ଶୁଭିଲା । କେହି ଯେମିତି ପଦାରେ ଡାକୁଛି । ଏତେ ରାତିରେ କିଏ କାହିଁକି ଡାକିବ ? ସେ ପୁଣି ଶୋଇବାକୁ ଚେଷ୍ଟା କଲା ।

ନାଃ ସତରେ କେହି ଜଣେ ନିଶ୍ଚୟ ଡାକୁଚି । ଝରକା ବାଟେ ପଦାକୁ ଚାହିଁଲା । ଥଣ୍ଡା ପବନ ଝରକା ବାଟେ ପଶି ଆସି ଦେହ ଶୀତେଇ ଉଠୁଛି । ବର୍ଷା କମି ଆସିଲାଣି । ଝରକାବାଟେ ମୁହଁ ଗଳେଇ ପଚାରିଲା—'କିଏ ? କିଏ ଡାକୁଛ ?' ସେପଟରୁ ଉତ୍ତର ଆସିଲା—'ଖୋଲ, କବାଟ ଖୋଲ, ମୁଁ ! ତୁମ ପାଇଁ ମାଛ ନେଇ ଆସିଛି ।'

କାବା ହେଇଗଲା କେଉଟଟି—କିଏ ତା' ପାଇଁ ମାଛ ନେଇ ଆସି ଥାଇପାରେ ? ସତେ କ'ଣ ସେଇ ଟିକି ମଣିଷଟି ? ଯାହା କଥା ସେ କେତେଥର ଶୁଣିଛି—ଦୁଃଖବେଳେ ଗହିର ଗୁହାରିବାକୁ ଯେ ସାହା ହୁଏ ? ଏ କଥା ଭାବିଦେଲା ମାତ୍ରେ ତାକୁ ଖୁସି ଲାଗୁଥାଏ ଯେତିକି ଡର ବି ମାଡ଼ୁଥାଏ ସେତିକି । ଥିର କରି ପଚାରିଲା—"ତୁମେ କ'ଣ ସେଇ ଟିକି ମଣିଷ ?" କଅଁଳିଆ ସ୍ୱରରେ ସେପଟରୁ ଶୁଭିଲା—"ହଁ, ହଁ ମୁଁ ସେଇ, ଜଲଦି କବାଟ ଖୋଲ ।"

ଅତି ସନ୍ତର୍ପଣରେ କେଉଟ କବାଟ ଖୋଲିଲା । ହସି ହସି ଭିତରକୁ ପଶି ଆସିଲା ଗୋଟିଏ ଛୋଟ ଗେଡ଼ା ବାମନଟିଏ । ମୁଣ୍ଡରେ ଗୋଟେ ଏଡ଼େବଡ଼ ଛଣର ଟୋପି କେଡ଼େ କୁଲ୍‌କୁଲିଆ ମୁହଁଟିଏ । ପିଠିରେ ଗୋଟେ ବଡ଼ ଗଛର ବୋଝ । କାନ୍ଧଉପରଦେଇ ଦଉଡ଼ିରେ

ବନ୍ଧା ହୋଇ ଲଟକା ହୋଇଛନ୍ତି । ଥିର୍ କରି ମାଛ ବୋଝଟିକୁ ପିଠିରୁ ଖୋଲି ତଳେ ରଖିଦେଇ କହିଲା—"ଅଧା ମାଛ ଚଢିଦିଅ, କାଲି ସକାଳେ ବଜାରରେ ବିକିବ । ବାକି ଅଧିକ ରାନ୍ଧି ରାନ୍ଧି ଖାଇବା । କାଲି ଏତିକ ବେଳକୁ ମୁଁ ଆସିବି ସେଇ ଗାହାଡ଼ ତଳକୁ । ମାଛଙ୍କ ରହିବା ଜାଗା ମତେ ଜଣା—ସେଠିକି ଗଲେ ଖାଲି ଖାଲେଇ ଧରି ଫେରିବ ନାହିଁ । କଣ ମୋ କଥାରେ ରାଜି ?"

କେଉଟଟି କାବା ହୋଇ ଥିର୍ ହୋଇ ତା' କଥା ଖାଲି ଶୁଣି ଯାଉଥାଏ । ବାମନଟି ଏଥି ଭିତରେ ମାଛ ବୋଝ ତଳେ ରଖି ଅଧା ଭାଗ କରିବାରେ ଲାଗିଥାଏ । କେତେ ମାଛ ! ଏଡ଼ିକ ଟିକେ ମଣିଷ, ଯାକୁ ବୋହିଲା କେମିତି ? ମାଛ ଭାଗ ସରିଲା—ବାମନ ଏଣିକି ଗୋଟେଇ ଘର କେଉଁଠି ପଚାରିଲା—ଦୁହେଁ ଗଲେ । କେଉଟକୁ କି ଜଣା ଗୋଟେଇ ଘରେ କ'ଣ କୋଉଠି ଥାଏ ।

ମସଲାର ନାଁ ନାହିଁ । ଖାଲି ଲୁଣ, ଟୋପେ ତେଲ ପକେଇ ସାଙ୍ଗେ ସାଙ୍ଗେ ବାମନ କି ସୁନ୍ଦର ମାଛ ରାନ୍ଧି ଦେଲା । ଦୁହେଁ ସେଇଠି ବସି ପେଟେ ପେଟେ ଖାଇଲେ । ଖିଆ ପିଆ ପରେ କାଲି ରାତିକି ସଜାଡ଼ ହୋଇଥିବା ପାଇଁ କହି ବାମନଟି ଚାଲିଗଲା । ଗଲାବେଳେ ବାରମ୍ବାର ତାଗିଦା କରି ଦେଇଗଲା, ଏ କଥା ଯେମିତି କେହି ନ ଜାଣନ୍ତି—ସ୍ତ୍ରୀ ବି ନୁହେଁ ।

କେହି ଉଠିବା ଆଗରୁ ସକାଳୁ ସକାଳୁ ବାକି ମାଛତକ ଧରି ବଜାରକୁ ଚାଲିଗଲେ କେଉଟ । ମାଛ ତ ସେତେବେଳେ ବଜାରରେ ସ୍ୱପ୍ନ ! ତା' ମାଛତକ ସାଙ୍ଗେ ସାଙ୍ଗେ ବିକ୍ରୀ ହୋଇଗଲା । ଚାଉଳ ପରିବା କିଣି ସେ ଶୀଘ୍ର ଶୀଘ୍ର ଘରକୁ ଫେରିଲା ଓ ଜଣେ ସାଙ୍ଗଠାରୁ ଟଙ୍କା ଧାର କରି ଏ ସବୁ ଆଣିଛି ବୋଲି ସ୍ତ୍ରୀକୁ କହିଲା ।

ଦିନ ସାରା ସେ ଜାଲ ଖଣ୍ଡିଏ ଧରି ରଫୁ କରୁଥାଏ ଓ ଗପ କଥା ହେଉଥାଏ । ସ୍ତ୍ରୀ ବାରମ୍ବାର କହୁଥିଲା—ଜାଲ ଖଣ୍ଡିକ ଧରି ନଈକୁ ଯାଉନ, କାହିଁକି ଘରଟା ଭିତରେ ବସିଛ ? ଏ ଧାର ଟଙ୍କା କେମିତି ଶୁଝିବ ? ଆଜି ତ ପାଗ ଭଲ ଅଛି । ହୁଏତ ମାଛ ଉଠିଥିବେ ।"

ସେ ଧୀର ସ୍ଥିର ସ୍ୱରରେ ସେଇ ଗୋଟିଏ ଉତ୍ତର ଦଏ, "ନଈରେ ମାଛ ନାହାନ୍ତି ।"

ରାତି ହେଲା । ଖାଇପିଇ ସମସ୍ତେ ଶୋଇବାକୁ ଗଲେ । କେଉଟ ଚଉଙ୍ଗ୍ ଚଉଙ୍ଗ୍ ହୋଇ ଓରଗୁଣ୍ଡୁ ଥାଏ । ବେଳ ହେଲା ମାହେ ବଡ ଖାଲେଇଟିଏ ପିଠିରେ ପକେଇ ଜାଲଟି ଧରି ବାହାରି ପଡ଼ିଲା ଠିକଣା ଜାଗାକୁ । ପାହାଡ଼ ତଳେ ନଈ କୂଳରେ ବାମନ ଠିକ୍ କରି ଅପେକ୍ଷା କରିଛି । ସେ ଖଣ୍ଡେ ଦୂରରୁ ଜହ୍ନ ଆଲୁଅରେ ତା' ମୁଣ୍ଡର ସେଇ ବଗିଚକାୟୁ ଛଣ ଟୋପିଟାକୁ ଦେଖି ଜାଣି ପାରିଲା ।

କେଉଟ ଜାଣିଛି, ଟିକି ମଣିଷକୁ ମାଛମାନେ ଦେଖିପାରନ୍ତି ନାହିଁ ସେ ମେଜିକ୍ କରି ପାଣି ଉପରେ ଚାଲିପାରେ । ଟିକି ମଣିଷଟି ପାଣି କୂଳରେ ପହଞ୍ଚି କେଉଟର ଗୋଡା ଦୁଇଟାକୁ ଧରି କ'ଣ ମନ୍ତ୍ର କରିଦେଲା ଓ କହିଲା—"ତୁମେ ମଧ୍ୟ ଏଇଲେ ପାଣିରେ ଚାଲିପାରିବ । ମୋ ପଛେ ପଛେ ଆସ । କିନ୍ତୁ ମନେରଖ ଆଦୌ କଥାବାର୍ତ୍ତା ହବନି । ତୁମ ସ୍ୱର ଶୁଣିଲେ ମାଛ ପଳେଇବେ । ସାବଧାନ !" କେଉଟ ରାଜି ହେଲା ଓ ତା'ପରେ ଦୁହେଁ ପାଣିରେ ପଶିଲେ । କାବା କଥା । ଗୋଡ଼ରେ ଟୋପେ ହେଲେ ପାଣି ଲାଗୁନି । ଆଗେ ଆଗେ ଟିକିମଣିଷ ଓ ପଛେ ପଛେ କେଉଟ ଚାଲିଛନ୍ତି ପାଣି ଭିତରେ । ଜାଲର ଦରକାର ନାହିଁ । ଟିକି ମଣିଷ ଗୋଟିଏ ଗୋଟିଏ ମାଛ ଧରି କେଉଟକୁ ଖାଲେଇରେ ରଖିବାକୁ ବଢ଼େଇ ଦେଉଥାଏ । ଅଳ୍ପସମୟ ଭିତରେ ଖାଲେଇ ପୂରିଗଲା, ହେଲେ କଥା କହିବାକୁ ତ ମନା । ସେ ମାଛମାନଙ୍କୁ ଟିକି ମଣିଷ ହାତରୁ ଆଣେ, କିନ୍ତୁ ରଖିବାକୁ ତ ଜାଗା ନାହିଁ । ଚୁପ୍ ଚୁପ୍ ସେମାନଙ୍କୁ ପାଣି ଭିତରକୁ ଫିଙ୍ଗି ଦେଉଥାଏ । ଏମିତି କିଛି ବାଟ ଗଲା ପରେ ଟିକିମଣିଷ କୂଳକୁ ଫେରିବା ଆରମ୍ଭ କଲା ଓ ଅଳ୍ପ ସମୟ ପରେ ସେମାନେ ଆସି କୂଳରେ ହାଜର । କୂଳ ଉପରକୁ ଉଠି ଆସି କେଉଟ ଫେରିପଡ଼ି ନଈକୁ ଚାହିଁଲା । ଭଗବାନ୍ ! ଏ ଗଣ୍ଡରେ ସେ ଚାଲୁଥିଲା କେମିତି ? ତାକୁ ସବୁ ସ୍ୱପ୍ନ ପରି ଲାଗିଲା । ତା' ଦେହରୁ ଗୋଟାଏ ଝାଳ ବୋହିଗଲା । ଆଗରେ ବାମନକୁ ଦେଖି ତା'ର ସାହାସ ଫେରିଲା ।

ଦୁହେଁ ଘରକୁ ଆସିଲେ । ଆଗ ରାତିପରି ମାଛ ଅଧା ଅଧା ଭାଗ ହେଲା । ବଳି ପାଇଁ ଅଧା ରଖିଦେଇ ବାକି ଅଧକ ଟିକି ମଣିଷ ସଙ୍ଗ

ବସିଲା । ଦୁହେଁ ସାଙ୍ଗ ହୋଇ ଖାଇ ବସିଲେ । କାଲି ରାତକେ ଆସିବ କହି

ଚାଲିଗଲା ।

ପୂର୍ଣ୍ଣିମୀ ରାତ ଛଡ଼ା ଅନ୍ୟ ସବୁ ରାତରେ ସେମାନେ ଏମିତି ଯା'ନ୍ତି । ଏ କଥା ସେ ତା ସ୍ତ୍ରୀକୁ ମଧ୍ୟ କହି ନଥାଏ । ତା' ମନରୁ ସନ୍ଦେହ ଦୂର କରିବାକୁ ସେ ଦିନରେ ମଧ୍ୟ ଜାଲ ନେଇ ନଈକୁ ଯାଏ । କିନ୍ତୁ ହଠାତ୍ ତା' ରୋଜଗାର ଏତେ ବଢ଼ିଯିବା ଦେଖି ସ୍ତ୍ରୀର ସନ୍ଦେହ ହେଲା । ଯେତେ ପଚାରିଲେ ସ୍ୱାମୀ କିଛି କହେନି । "କଥା କ'ଣ ! ହଠାତ୍ ଏତେ ପଇସା ଇଏ ରୋଜଗାର କରୁଛନ୍ତି କୋଉ ବାଟରେ ?" ସେ ନିଶାହି ସ୍ୱାମୀଟିକୁ ଜଗିବାକୁ ଲାଗିଲା ।

ରାତିରେ ଦେଖିଲା, ସେ କିଛି ସମୟ ପାଇଁ ପଦାକୁ ଗଲା ଓ ଅଳ୍ପ ସମୟ ପରେ ଝୁଡ଼ିଏ ବରାଟ ମାଛ ଧରି ଫେରିଲା । ସାଙ୍ଗରେ ଟିକି ବାମନଟିଏ । ଅଳ୍ପ ସମୟ କ'ଣ ଫୁସ୍‌ଫାସ୍ କଥା ସେ ଘରୁ ଶୁଭିଲା । ତା'ପରେ ରୋଷେଇ ଘରୁ ମାଛ ରନ୍ଧାର ବାସ୍ନା ଆସିଲା । ସ୍ତ୍ରୀଟି ଚୁପ୍ ଚାପ୍ ତା ଶୋଇବା ଘର କବାଟ କଣରେ ଠିଆ ହୋଇ ରନ୍ଧା ଘରୁ ଖାଡ଼୍ ଖାଡ଼୍ ଶବ୍ଦ ସବୁ ଶୁଣୁଥାଏ । ବାହାରକୁ ଗଲେ ତ ଧରା ପଡ଼ିଯିବ । କିଛି ସମୟ ପରେ ଜାଣି ପାରିଲା ବାମନଟି ଘରୁ ବାହାରି ଚାଲିଗଲା ଓ ତା' ସ୍ୱାମୀ ଚୁପ୍‌ଚାପ୍ ତା' ଜାଗାରେ ଯାଇ ଶୋଇ ପଡ଼ିଲା ।

ଏ ସବୁ ଅଦ୍ଭୁତ ଅନୁଭୂତି ପରେ ତାକୁ କି ଆଉ ନିଦ ହୁଏ ? ରାତି ସାରା ସେ ସେଇ କଥା ଭାବି ଲାଗିଲା । କିଏ ସେ ବାମନ ? ଏମିତି ସାହାଯ୍ୟ କେହି କାହାକୁ ମିଛରେ କରେନି । ତା'ର କିଛି ଖରାପ ମତଲବ୍ ନାହିଁ ତ ? ତା' ନିଶାହି ସ୍ୱାମୀଟିକୁ ଲୋଭ ଦେଖେଇ ଶେଷରେ ବିପଦରେ ପକାଇବ ନାହିଁ ତ ? ଆମର ଅଧିକା ପଇସା ଦରକାର ନାହିଁ । ଶାନ୍ତି ଦରକାର । ସେ ଆଗ କେତେଦିନର କଥା ମନେ ପକାଇଲା । ପଇସାର ସମସ୍ୟା ନ ଥିଲେ ବି ତା ସ୍ୱାମୀ କେମିତି ଚୁପ୍‌ଚାପ୍ ହୋଇ ଯାଇଛି । ତା'ଠାରୁ କ'ଣ ଗୋଟେ କଥା ଲୁଚେଇବା ପାଇଁ ସେ ସବୁବେଳେ ଚେଷ୍ଟା କରୁଛି । ଆଉ ସେ ଖୁସିବାସି ନାହିଁ । ପିଲାଙ୍କ ସଙ୍ଗେ ଖେଳ କୌତୁକ ନାହିଁ । ଗପସପ ନାହିଁ । ବାମନଟି କ'ଣ ଧନ ଲୋଭ ଦେଖେଇ ତା ନିଶାହି ସ୍ୱାମୀଟିକୁ ତା'ଠାରୁ ଛଡ଼େଇ ନେବ କି ? ମୋର ଧନ ଦରକାର ନାହିଁ ।

ମୁଁ ମୋର ସରଳଆ ସେନ୍ନ ସ୍ୱାମୀଟିକୁ ଗୃହେଁ । ଓପାସରେ ରହିଲେ ବି ସେ ମୋର ସୁଖ । ବାମନଟି ହାତରୁ ତା' ସ୍ୱାମୀକୁ ଉଦ୍ଧାର କରିବା ପାଇଁ ସେ ଉପାୟ ଚିନ୍ତା କଲା ।

ପରଦିନ ଖୋଷେଇ ଘର କାନ୍ଥରେ କଣାଟିଏ କରି ରାତିକୁ ଅପେକ୍ଷା କରି ରହିଲା । ରାତିରେ ମାଛ ଅଧା ହବା ଓ ଖୋଷେଇ ହୋଇ ଖାଇବା ପିଇବା ସବୁ କଥା ସେ ଲୁଚି ଲୁଚି ସେଇ କଣା ବାଟେ ଦେଖିଲା ।

ତାଙ୍କ ଖୋଷେଇ ବନ୍ଦୋବସ୍ତକୁ ସେ ତ ଦେଖିଥିଲା । ପରଦିନ ରାତିରେ ଶୋଇବାକୁ ଯିବା ପୂର୍ବରୁ ସେମାନେ ଯେଉଁଥିରେ ମାଛ ରାନ୍ଧୁଥିଲେ, ଠିକ୍ ସେମିତି ଗୋଟିଏ କାଗଜର କଡ଼େଇ ତିଆରି କରି ଚୁଲି ପାଖରେ ରଖି ଦେଇ ପ୍ରକୃତ କଡ଼େଇଟିକୁ ଲୁଚେଇ ଦେଲା । ରାତିରେ ବାମନ ଚୁଲି ଜାଳେଇ ସେମିତି ତେଲ ଦେଇ କାଗଜ କଡ଼େଇକୁ ଚୁଲିରେ ବସେଇ ଦେଇଛି, ଭୁସ୍ କରି ସେଇଟା ଜଳି ଉଠିଲା ।

• ଠିକ ମଣିଷର ମନ ବିଗିଡ଼ି ଗଲା । କୋଉଠି କ'ଣ ଅସୁବିଧାର ସୂଚନା ପାଇ, କେହି ତା' ଉପସ୍ଥିତି ଜାଣିପାରିଛି ଭାବି, ସେ ଜାଗା ଛାଡ଼ି ଦୌଡ଼ିପଳାଇ ଯାଇ ଅନ୍ଧାର ଭିତରେ ମିଶିଗଲା । କେହି ତୃତୀୟ ବ୍ୟକ୍ତି ତା' ଉପସ୍ଥିତିର ସୂଚନା ପାଇଲେ ସେ ଆଉ ସେଠିକି ନ ଆସେ ।

ସ୍ତ୍ରୀଟିର ଭଲ ବୁଦ୍ଧିମତୀ ଯୋଗୁ ବଡ଼ ପରିବାରଟି ଚିରଦିନ ଲାଗି ସାହାଯ୍ୟରୁ ବଞ୍ଚିତ ହେଲେ ।

# ମଣିଷ ପୁଣି ମାଙ୍କଡ଼ ହୁଏ ?

ଧନୀ ଘରଟିଏ । ସ୍ୱାମୀ ସ୍ତ୍ରୀ ଦୁଇ ପ୍ରାଣୀ । ପିଲାଛୁଆ ନ ଥିଲାରୁ ଘରଟା ଖାଁ ଖାଁ ଗୋଡ଼ାଏ । ସବୁବେଳେ ତାଙ୍କର ମନ କେହି ଗୋଟେ ପିଲା ସେ ଘରେ ଏକଡ଼ ସେକଡ଼ ହଉଥାନ୍ତା । ହେଲେ ଭାଗ୍ୟରେ ତ ନାହିଁ, କ'ଣ କରିବେ ? ଏତେ ଦୁଃଖ, ହେଲେ ପ୍ରକୃତି କ'ଣ ଭଲ ? ଧନ ଲୋଭରେ ଦୁହିଁଙ୍କ ହାହିଁ ସରିଛନ୍ତି । ସାଇ ପଡ଼ିଶା ବନ୍ଧୁ ବାନ୍ଧବ ଘରକୁ ଆସିଲେ କାଳେ ତାଙ୍କ ପାଇଁ କ'ଣ ଖର୍ଚ୍ଚ ହୋଇଯିବ, ସେଥିପାଇଁ କାହାକୁ ଘରକୁ ଡାକନ୍ତି ନାହିଁ । ଭିକାରୀଟିଏ ବି ସେ ଦାଣ୍ଡରେ କେବେ ଠିଆ ହେବାର ଦେଖି ନାହିଁ । ଚିହ୍ନା ଭିକାରୀ ତ ତାଙ୍କ ପ୍ରକୃତି ଜାଣନ୍ତି, ମିଛରେ କାହିଁକି ଗାଳି ଖାଇବେ ? ଦୂର ଜାଗାର ଅଜଣା କେହି ଭିକ ଗଣ୍ଡିଏ ମାଗିଲେ ମାଲିକ ବାଡ଼ି ଧରି ବାହାରି ଆସି କୁକୁର ଘଉଡ଼ା ପରି ଘଉଡ଼ାଇ ଦିଏ ।

ଭିକ ନ ଦେବ ତ ନାହିଁ କିଏ କଅଣ ବାଧ କରୁଛି ? ହେଲେ ମାଡ଼ ଗାଳିରେ କି ଦରକାର ? ଭିକାରୀ ବୋଲି କ'ଣ ତା'ର ଜୀବନ ନାହିଁ ? ତା ଦେହକୁ କ'ଣ ମାଡ଼ କାଟେନି ନା ମନକୁ ଗାଳି କାଟେନି ? କଷ୍ଟ ହେଲେ ମଣିଷ ମନରୁ ଅଭିଶାପ ଆପେ ଆପେ ବାହାରି ଆସେ । ସେମାନେ ଗାଳି ମାଡ଼ ଖାଇ, ତାତଲା ନିଃଶ୍ୱାସ ପକାଇ ପକାଇ ସେ ଦାଣ୍ଡରୁ ବିଦା ହୋଇଯାନ୍ତି । ଲୋଭ ତ ଦୁହିଁଙ୍କ ମୁଣ୍ଡ ଖାଇଛି । ସେମାନେ କେମିତି ଅନ୍ୟର ଦୁଃଖ କଥା ବୁଝନ୍ତେ ?

କେତେଦିନ ଚାଲିଗଲା । ସବୁଦିନ ତ ସମାନ ଯାଏନି । କେତେ ଅଉ ଏକୁଟିଆ ଚଳିବେ ? କେହି ଜଣେ କାମ ଦାମରେ ସାହା ହେବା ନିହାତି ଦରକାର ପଡ଼ିଲା । ବୋଲହାକ କରିବା ପାଇଁ ସେମାନେ ଶେଷରେ ଚାକରାଣୀ ଝିଅଟିଏ କିଣି ଆଣିଲେ । ଝିଅଟି ଭାରି ଭଲ । ସବୁ କାମ ସେ ଶୀଘ୍ର ଆଦରି ନେଲା । ଘର କାମଠାରୁ ଆରମ୍ଭ କରି ରୋଷେଇ ପର୍ଯ୍ୟନ୍ତ ସବୁ କାମ ସୁରୁଖୁରୁରେ ଚାଲିଲା । ସ୍ୱାମୀ ସ୍ତ୍ରୀ ଦୁହିଁଙ୍କର ତା' ଉପରେ ଭାରି ନଜର । କାଳେ କ'ଣ ନଷ୍ଟ କରିଦେବ । କାହାକୁ କ'ଣ ଦେଇଦବ କି

ବେଶୀ ଖାଇଯିବ ମାଲିକାଣୀ ତାକୁ ଗୋଡ଼େ ଗୋଡ଼େ ଜଗିଥାନ୍ତି । ଟିକେ କିଛି ଅବାଗିଆ କାମ ଦେଖିଲେ ଆରମ୍ଭ ହୋଇଯାଏ ଖରାପ ଭାଷାରେ ଗାଳି । ନିତି ମାଡ଼ ଖାଇବା ବି ତା'ର ଅଭ୍ୟାସରେ ପଡିଗଲା । ଝିଅଟି ଭାଗ୍ୟକୁ ଆଦରି ସବୁ ସହିଯାଏ । ନିତି ରାତିରେ ଖଣ୍ଡିଏ ଚଟେଇ ଉପରେ ପଡ଼ି କାନ୍ଦି କାନ୍ଦି ଠାକୁରଙ୍କୁ ଡାକେ, "ମତେ ଏ କଷ୍ଟରୁ ଉଦ୍ଧାର କରିଦିଅ ପ୍ରଭୁ । ମତେ ମାରିଦିଅ ପଛେ, ଏମିତି କାଲୁବାଲ୍ କରନି ।"

ରାତି ପାହିଲା ମାତ୍ରେ ଗୋଟେ କୋକୁଆ ଭୟରେ ସେ ବିଛଣା ଛାଡେ । ତା'ପରେ ସେ ଠିକ୍ ଜାଣେ କାରଣ ଅକାରଣରେ ଆରମ୍ଭ ହୋଇଯିବ ଗାଳି ଓ ମାଡ଼ । କେତେ ସେ ସହିବ ? କୁଆଡ଼େ ପଳେଇଯା'ନ୍ତା ହେଲେ । ତା'ର କି କୋଉ ବାଟ ଅଛି ? ସେମାନେ ଯେ ତାକୁ କିଣି କରି ଆଣିଛନ୍ତି । ସଙ୍ଗେ ସଙ୍ଗେ ହୁଲିଆ ଜାରି ହୋଇଯିବ । ସେ ପୁଣି ଧରା ହୋଇ ଆସିବ । ଏ ଦଶାରୁ ସେ ଦଶା ବଳି ପଡ଼ିବ । ଏ ଜନ୍ମରେ ତା'ର ଆଉ ସୁଖ ନାହିଁ । କି ପାପ ସେ କରିଥିଲା ଯାହା ଜୀବନ ଏମିତି ହଇରାଣ ହୋଇ ତା'ର କଟିବ । ତା' ଦୁଃଖରେ ଯାଇ ପଡ଼ିଶାଙ୍କ ଆଖିରୁ ଲୁହ ଝରେ । ହେଲେ ଯେତେ କଷ୍ଟ ଦେଲେ ବି ଏ ଘରଙ୍କ ମନ ଶାନ୍ତ ହୁଏନି । ତାଙ୍କ ଅତ୍ୟାଚାରର ଦିନକୁ ଦିନ ବଢ଼ି ଚାଲିଥାଏ ।

ଠାକୁର ତ କାଳ ନୁହଁନ୍ତି । ଝିଅଟିର ବିକଳ ଡାକ ତାଙ୍କ ପାଖରେ ଠିକ୍ ପହଞ୍ଚିଲା । ଦିନେ ସେ ସତ ପରଖିବାକୁ ଗୋଟିଏ ଭିକାରୀ ବେଶରେ ତାଙ୍କ ଦାଣ୍ଡରେ ପହଞ୍ଚି ଡାକ ପକେଇଲେ, "ଖାଇବାକୁ ଗଣ୍ଡେ ମିଳିଯାଉ, ମା' । ସେତେବେଳେ ଘରେ ଝିଅଟି ଏକା ଥାଏ । ମାଲିକ ମାଲିକାଣୀ କୁଆଡ଼େ ବୁଲି ଯାଇଥାନ୍ତି ବାହାରକୁ । ଚୁଲି ପାଖରେ ବସି କୁଟା ପୂଳାଏ ଲେଖାଁ ଚୁଲିକୁ ମୋହି ଦେଇ ଗୋଷେଇ ବସେଇଥାଏ ଓ ନିଜ ଦୁର୍ଭାଗ୍ୟ କଥା ଭାବି ଆଖିରୁ ଲୁହ ପୋଛୁଥାଏ । କୁଟା ସବୁ ଚୁଲିରେ ମୋହିଲାବେଳେ ସେଥିରେ ଅଜାଣତରେ ରହି ଯାଇଥିବା ଧାନ-ଗୁଡ଼ିକୁ ସେ ସବୁଦିନେ ସଞ୍ଚୟ କରି ରଖେ । ଏମିତି ବାଛି ବାଛି ସେ ମାଣେ ରଖିଥିଲା ।

ଭିକାରୀଟିର ଡାକ ଶୁଣି ତା' ମନ କ'ଣ ହୋଇଗଲା । ପେଟ ପୂରାଇ ଦିନେ ମୁଠେ ଖାଇବାର ଆନନ୍ଦ ତ ସେ କିଛି ଜାଣିନି ନାହିଁ ।

କେବେ ହାତ ଟେକି କାହାକୁ ପୋଷେ ଦବା ବ ତା' ଭାଗ୍ୟରେ ନାହିଁ ।
କ'ଣ ତା'ର ଅଛି ଯେ ସେ ଦେବ ? ସବୁ ତ ଗହମ ଗୋଟି ଗଣିଛା,
ତାଙ୍କ ଧାନରୁ ପୋଷେ ଦେଲେ ପିଠିରୁ ଚେପା ଛାଡ଼ିବ । କିନ୍ତୁ ନାହିଁ
କହ ଭିକାରୀଟିକୁ ଫେରାଇ ଦବାକୁ ତାକୁ ଭାରି ବାଧିଲା । ହଠାତ୍
ମନକୁ ଜୁଟିଲା, କୁଣ୍ଟାରୁ ସଞ୍ଚିଥିବା ଧାନତକରେ ତ କାହାର ଅଧିକାର
ନାହିଁ । ସେତକ ଦେଇ ଦେଲେ କିଏ ସେ କାହିଁକି ଜାଣିବ ? ସେ ଖୁସି
ହୋଇ ଧାନତକ ଲୁଚେଇଥିବା ଜାଗାରୁ କାଢ଼ି ଦାଣ୍ଡ କବାଟକୁ ଧୀରେ
ଖୋଲି ଏକଡ ସେକଡ଼କୁ ସନ୍ତର୍ପଣରେ ଚୃହିଁ ଚୃହିଁ ଯାଇ ସେ ଭିକାରୀ
ପାଖରେ ପହଞ୍ଚିଲା । ତାକୁ ଚୃହିଁଦେଇ ତା' ମନ କ'ଣ ହୋଇଗଲା ।
"ଆହା, ମୋଠୁ ବ ଦୁଃଖୀ ସଂସାରରେ ଅଛନ୍ତି ?" କି ରୋଗିଣା ତା' ଦେହ,
କି ଚିରିଣ୍ଡା କନା ସେ ପିନ୍ଧିଛି, କେତେଦିନ ହେଲା ପେଟକୁ ଦାନା ଯାଇନ
ବୋଧେ । ମନ ତା'ର ହେଉଥାଏ, କ'ଣ ସବୁ ସେ ତାକୁ ଦେଇ ପକାନ୍ତା
ପେଟ ଭରି ଖାଇବାକୁ, କିନ୍ତୁ ତା'ର ଅଛି କ'ଣ ?

ଭିକାରୀଟି ତା' ହାତରେ ଧରିଥିବା ଜାଗାଟିକୁ ଏକଲରେ ଚୃହିଁ
ଥାଏ । ପାଖରେ ପହଞ୍ଚି ତାକୁ କହିଲା, "ନିଅ ଭାଇ ? ମୋର ତ ଆଉ କିଛି
ନାହିଁ, ଏଇତକ ମୋର ସଞ୍ଚିତ ଧନ । ଏହାକୁ ନେଇ ଚଞ୍ଚଳ ଏଠୁ ପଳାଅ ।
ମୋ ମାଲିକ ପହଞ୍ଚିଗଲେ ଆମ ଦୁହିଁଙ୍କ ଅବସ୍ଥା ସରିଯିବ । ସେ ଭାରି ରାଗୀ,
ତୁମକୁ ତ ଯାହା ଗାଳିଦେବେ, ମତେ ମାରି ପକେଇବେ ।"

ଭିକାରୀଟି ତା' ମୁହଁକୁ ଚୃହିଁ କ'ଣ ଚିକେ ଭାବିଲା । ଧାନତକ
ନବାକୁ ଅଣ୍ଟି ଦେଖେଇ ଦେଲା, ସେତକ ନେଇସାରିଲା ପରେ
ସା' ସାତସିଆଁ ଲୁଗା ତଳୁ ଗୋଟେ ସୁନ୍ଦର ରୁମାଲ୍ଟିଏ କାଢ଼ି ଝିଅଟି
ହାତକୁ ବଢ଼େଇ ଦେଇ କହିଲା, ଝିଅ, ତୋ କଥା ମୋର ସବୁଦିନେ
ମନେ ରହିବ । ନେ, ଏ ରୁମାଲ୍ଟି ରଖ । ପ୍ରତିଦିନ ମୁହଁ ଧୋଇସାରି
ଏଇଥିରେ ମୁହଁ ପୋଛିହେବୁ । କିନ୍ତୁ ମନେ ରଖିଥା, ଆଉ କାହାକୁ
ଏହାକୁ ଦବୁନ ।" ଏତିକ କହି ଚଳିଯିବାକୁ ବାହାରୁଚି, ଗେଟ୍ ଖୋଲି
ମାଲିକ ମାଲିକାଣୀ ପଶି ଆସିଲେ । ଭିକାରୀଟି ସାଙ୍ଗରେ ଚାକରାଣୀ ଝିଅଟି
କ'ଣ ସଲସୁତର ହଉଚି ଭାବି ତା' ପାଖକୁ ଦୌଡ଼ି ଆସିଲେ । "କ'ଣ ସବୁ

ତାକୁ ଦେଇ ଦେଇଛୁ ? ସତ କହ, ନ ହେଲେ ତୁମ ଦୁହିଁଙ୍କୁ ମୁଁ ଜୀବନରେ ମାରି ଦେବ ।" ମାଲିକ ଗର୍ଜି ଉଠିଲେ । ଝିକାଗାଟି ଏ ଅବସ୍ଥା ଦେଖି ସେଠୁ ଚଞ୍ଚଳ ପଳେଇ ଯାଇ ବଞ୍ଚିଗଲା । ଝିଅର ତ କୁଆଡ଼େ ପଳେଇ-ଯିବାର ବାଟ ନାହିଁ, ବଗିଚାର ଗୁଡ଼ାଏ ମାଡ଼ ଖାଇବା ସାର ହେଲା । ମାଡ଼ ତ ତା'ର ଦିହ ସୁହା ହେଇଗଲାଣି । ଲୁଚେଇ ଲୁଚେଇ ରୁମାଲ୍‌ଟିକୁ ଦେଖି ସେ କଷ୍ଟକୁ ହଜମ କରି ନେଲା ।

ଦିନ ଗଡ଼ି ଚାଲିଲା । ପ୍ରତିଦିନ ମୁହଁ ଧୋଇ ସେଇ ରୁମାଲ୍‌ରେ ସେ ମୁହଁ ପୋଛେ । ଆଶ୍ଚର୍ଯ୍ୟ କଥା, ରୁମାଲ୍‌ଟିର କି ଅଦ୍ଭୁତ ଶକ୍ତି । କଳା ଝିଅଟାର ମୁହଁ ଧୀରେ ଧୀରେ ଗୋରି ଓ ସୁନ୍ଦର ହେବାକୁ ଲାଗିଲା । ଅଳ୍ପ କେତେଦିନ ପରେ ସେ ଅତି ସୁନ୍ଦରୀ ହୋଇଗଲେ ।

ମାଲିକ ମାଲିକାଣୀ ଏ କଥା ଦେଖି କାବା । ଏ କେମିତି କଥା ! ହଠାତ୍ କାଲି, ଅପରିଚ୍ଛନ୍ନି ଝିଅଟା ଏତେ ସୁନ୍ଦର ହୋଇ ଯାଉଛି କେମିତି ? ଦିନେ ସେମାନେ ତାକୁ ଏହାର କାରଣ ପଚାରିଲେ, ଝିଅଟି ସବୁ ସତ କଥା କହିଗଲା ଓ ରୁମାଲ୍‌ଟି ତାଙ୍କୁ ଦେଖାଇଲା । ମାଲିକାଣୀ ଚଟ୍ କରି ତା ହାତରୁ ରୁମାଲ୍‌ଟି ଛଡ଼େଇ ନେଲେ ଓ ତାଙ୍କ ଘରର ଧାନଚକ ବଦଳରେ ସେ ରୁମାଲ୍‌ଟି ମିଳିଥିବାରୁ ସେଇଟା ତାଙ୍କର ବୋଲି ଦାବିକଲେ । ଝିଅଟି ନିରୁପାୟ ହୋଇ ଚୁପ୍ ରହିଲା ।

ରାତିରେ ସ୍ୱାମୀ ସ୍ତ୍ରୀ ଦୁହିଁଙ୍କୁ ନିଦ ନାହିଁ । କେତେବେଳେ ସକାଳ ହେଲେ ସେମାନେ ମୁହଁ ଧୋଇ ସେଥିରେ ମୁହଁ ପୋଛି ସୁନ୍ଦର ହେବେ । ସେଇ ଏକମାତ୍ର ଚିନ୍ତା ।

ସକାଳ ହେଲା ଦୁହେଁ ସାଙ୍ଗ ହୋଇ ଏକାଠି ବସି ମୁହଁ ଧୋଇଲେ, ଓ କିଏ ଆଗ ମୁହଁ ପୋଛି ହେବ ବୋଲି ଛଡ଼ାଛଡ଼ି ହୋଇ ରୁମାଲ୍‌ରେ ମୁହଁ ପୋଛି ହେଲେ ।

ଭଗବାନଙ୍କର ବିଚାର୍ ତ ଅନ୍ୟ ପ୍ରକାର । ଦୁହେଁ ମୁହଁ ପୋଛି ସାରିଲା ମାତ୍ରେ ଅଦ୍ଭୁତ କଥା ସବୁ ଘଟିଲା । ଦୁହିଁଙ୍କ ମୁହଁର ଆକୃତି ହଠାତ୍ ବଦଳି ଗଲା । ଦେହସାକ ରୁମ ସାଲୁବାଲୁ ହୋଇଗଲା ମୁହଁ କଳା ହୋଇ ଦିଶିଲା ଠିକ୍ ମାଙ୍କଡ଼ ଭଳି । ପଛପଟେ ପୁଣି କେଡ଼େ ବଡ଼

ବଡ଼ ଲଜ୍ଜା । ଯାଃ, ଦୁହେଁ ମଣିଷରୁ ମାଙ୍କଡ଼ ପାଲଟି ଗଲେ । ଆଉ ମୁହୂର୍ତ୍ତ ଗୋଟିଏ ବି ଅପେକ୍ଷା ନାହିଁ । ଡେଇଁ ଡେଇଁ ଜଙ୍ଗଲ ଭିତରକୁ ଚାଲିଗଲେ । ଆଉ ଫେରିଲେ ନାହିଁ ।

ଝିଅଟି ତ ସହଜେ ଆଗରୁ ସୁନ୍ଦରୀ ହୋଇଯାଇଥିଲା । ଏବେ ସବୁ ସମ୍ପତ୍ତିର ମାଲିକ ହୋଇ ରହିଲା ।

* * *

# ମଇନା

"ରାତି ପଗ୍ର ପାହି ଗଲାଣି, କ'ଣ ଏତେ ଡେରି କରୁଚ ଉଠ ଉଠ" କଅଁଳିଆ ସ୍ୱରର ଏ ଡାକ ଶୁଣି ଲୁସାନ୍‌ର ନିଦ ଭାଙ୍ଗେ । ଏ ତା'ର ନିତିଦିନିଆ ଅଭ୍ୟାସ । ଆଖି ଖୋଲି ଆଗ ଝରକାକୁ ଚାହିଁବ, ଦେଖିବ ତା ଗେହ୍ଲେଇ ମଇନା ଝରକା ପାଖରେ ବସି ସେ ଶେଯ ନ ଛାଡ଼ିବା ପର୍ଯ୍ୟନ୍ତ ଏମିତି କହି ଲାଗିଥିବ ଓ ତରଙ୍ଗ ତରଙ୍ଗ ହୋଇ ଏଣିକି ତେଣିକି ଘୁଞ୍ଚୁଥିବ । ସେ ବିଛଣା ଛାଡ଼ି ଉଠି ଆସିଲେ ମଇନାର ସକାଳ କାମ ସରିଲା । କୁଆଡ଼େ ସେ ଫୁର୍‌କିନା ଉଡ଼ିଯିବ । ପୁଣି ଲୁସାନ୍ ତାଙ୍କୁ ଭେଟିବ କାମ ଉପରେ । ସନ୍ଧ୍ୟାବେଳକୁ ସେ କାମରୁ ଫେରିବା ପର୍ଯ୍ୟନ୍ତ ତାରି ଘରପାଖେ ଘୂର୍‌ଫେର ହଉଥିବ ।

ଲୁସାନ୍ ଘର ରଙ୍ଗ କରିବା ମିସ୍ତ୍ରୀ । ସହରରେ ତା'ର ଭାରି ନା ଡାକ । କାନ୍ଥରେ ସୁନ୍ଦର ସୁନ୍ଦର ମୂର୍ତ୍ତି ଆଙ୍କି ରଙ୍ଗ ଦେଇଥିବ ଯେ ଦୂରରୁ ଜୀଅନ୍ତା ପରି ଦିଶୁଥିବ । ତାକୁ ପୁଣି ସାହାଯ୍ୟ କରିବାକୁ ତା ମଇନାର କଳଭ ! ଲୁସାନ୍ ଉଚ୍ଚ ଜାଗାରେ ଭାରା ଉପରେ ଠିଆ ହୋଇ କାମ କରିଥିଲେ ସେ ଆଉ ତାକୁ ଛାଡ଼ି ମୂହଁ ଭୈଁ ନ ଯାଏ । ବାରମ୍ବାର ତା'ର ମନେ ପକେଇ ଦଉଥିବ, "ଦେଖ ! ଏତେ ଉପରେ ଠିଆ ହୋଇଚ, ବ୍ୟସ୍ତ ହୁଅନି, ଧୀରସ୍ଥିର ହୋଇ କାମ କର ।" ମଣିଷ ବି ଅନ୍ୟ ପାଇଁ ଏତେ ଭାବିବନି । ଲୁସାନ୍ ହାତରୁ ତୁଳୀ ଖସି ପଡ଼ିଲେ କାହାରି କହିବା ଦରକାର ନାହିଁ, ମଇନା ଉଡ଼ିଲା ଫୁର୍‌କିନା, ଓ ଥଣ୍ଟରେ ତୁଳୀ ଧରି ଫେରି ଆସିବ ସେଇଲେ । ଲୁସାନ୍ ସାଙ୍ଗରେ କାମ କରୁଥିବା ଅନ୍ୟ ମିସ୍ତ୍ରୀ ମୂଲିଆମାନେ ମଧ୍ୟ ମଇନାକୁ ଭାରି ଭଲ ପା'ନ୍ତି ।

କେଡ଼େ ଶ୍ରେଷ୍ଠ ହୋଇଥିଲା ସେ । ମୋଟେ ଚୁମ ଉଠି ନ ଥାଏ ଭଲ କରି । ଲୁସାନ୍ ତାକୁ ଘରକୁ ଆଣିଥିଲା । ଖୁଆଇ ପିଆଇ ପିଞ୍ଜରାରେ ରଖି ଭାରି ଆଦରରେ ବଡ଼ କଲା । ତା'ର ତ ଆଉ କେହି ନାହିଁ, କାମରୁ ଫେରି ତା ସାଙ୍ଗରେ ବହେ ଗପିବ । ତାକୁ କଥା କୁହା ଶିଖେଇବ । ଏମିତି ଆଦର ଷାଇ ପାଇ ମଇନାଟି ଏତେ ପୋଷା ମାନିଗଲା ଯେ ଆଉ

ପିଞ୍ଜରା ନେଉଥା ହେଉନାହିଁ । ସେ ମନଇଚ୍ଛା ଉଡ଼ିବୁଲେ । ଲୁସାନ୍ ଯେତେବେଳେ ତାକୁ ଖୋଜେ ସେ ସେଇଠି କୋଉଠି ପାଖରେ ଥାଏ । ଡାକିଦେଲେ ଫୁର୍‌କିନା ଉଡ଼ି ଆସିବ ତା' ପାଖକୁ । ମଣିଷର କଥା କେତେ ସୁନ୍ଦର ସେ ବୁଝେ, ପୁଣି କହେ !

ସହରର ମାଜିଷ୍ଟ୍ରେଟଙ୍କର ମସ୍ତବଡ଼ ଘରଟିଏ, ସହର ମଝି ଜାଗାରେ ତିଆରି ହୋଇ ସାରିଥାଏ । ରଙ୍ଗ ଦେଇ ସଜାଇବା ଭାର ଥାଏ ଲୁସାନ୍ ଉପରେ । ବଡ଼ ନିକୁଟା ସେ କାମ । ଲୁସାନ୍ ମନ ପ୍ରାଣ ଦେଇ ଲାଗି ପଡ଼ିଥାଏ । ତା' କାମ ଯଦି ମାଲିକଙ୍କ ମନକୁ ପାଇଯାଏ ନା, ତେବେ ତ ଆଉ କଥା ନାହିଁ । ଟଙ୍କାକୁ ଟଙ୍କା ମିଳିବ, ନା ମଧ୍ୟ ବଢ଼ିବ, ତା' ଅବସ୍ଥା ନିଶ୍ଚୟ ବଦଳି ଯିବ । ମାଲିକ ବେଳେ ବେଳେ କାମ ତଦାରଖ କରିବାକୁ ଆସନ୍ତି ।

ଦିନେ ଲୁସାନ୍ କ'ଣ ଗୋଟାଏ ମୂର୍ତ୍ତି ତିଆରି କରିବାରେ ମନ ଦେଇଛି ଦେଖି ମାଲିକ ପଚାରିଲେ—"ଲୁସାନ୍ ସେ କି ମୂର୍ତ୍ତି ?" ଲୁସାନ୍ ଧୀର ଭାବରେ ଉତ୍ତର ଦେଲା—"ସାର୍ ! ଏ ଦୀର୍ଘ ଜୀବନ ଓ ଶୁଭ ଭାଗ୍ୟର ପ୍ରତୀକ !" ହଠାତ୍ କୋଉଠୁ ଗୋଟାଏ କଅଁଳିଆ କିନ୍ତୁ ଧାରୁଆ ପରିଷ୍କାର ସ୍ୱର ଶୁଭିଲା "ଦୀର୍ଘ ଜୀବନ ଓ ଶୁଭ ଭାଗ୍ୟ, ଦୀର୍ଘ ଜୀବନ ଓ ଶୁଭ ଭାଗ୍ୟ ।" ମାଲିକ ସ୍ୱର ଶୁଭୁଥିବା ଦିଗକୁ ଆଖି ଫେରାଇଲେ । ମଇନାଟିଏ କେଡ଼େ ସୁନ୍ଦର ଭାବରେ ମିସ୍ତ୍ରୀର କଥାକୁ ଅନୁକରଣ କରି କହି ଲାଗିଛି । ଚଢ଼େଇଟା ମୁହଁରୁ ଏମିତି କଥା ଶୁଣି ତାଙ୍କୁ ଭାରି ଖୁସି ଲାଗିଲା । କାହାର ଏ ମଇନା ? କିଏ ଏଥିକୁ ପାଳିଛି ? ମଇନାଟି ଲୁସାନ୍‌ର କଥା ଶୁଣି ସେ ଆଦରରେ ତାକୁ ପାଟିକୁ ଡାକିଲେ । ଡାକିଦେଲା ମାତ୍ରେ ମଇନା ଉଡ଼ି ଆସି ତାଙ୍କ ପାଖରେ ହାଜର । ମଣିଷଙ୍କୁ ତ ତା'ର ଡର ନାହିଁ । ସେ ଉଡ଼ିଆସି ଡାକିଲାବାଲାଙ୍କ ହାତରେ ବସିଲା । ଗେହ୍ଲେଇ ହୋଇ ପୁଣି ଉଡ଼ିଗଲା ! ମାଜିଷ୍ଟ୍ରେଟ୍ ତାକୁ ଟିକେ ଭଲ କରି ଦେଖିଲେ । ମନରେ କ'ଣ ଭାବିଲେ କେଜାଣି, ନିଜ ଦାଢ଼ିକି ସାଉଁଳେଇ ସାଉଁଳେଇ ସେଠୁ ବାହାରି ଗଲେ । ତାଙ୍କ ଗ୍ରହାଣିକୁ ଲୁସାନ୍ ପ୍ରମାଦ ଗଣିଲା । ବଡ଼ ଲୋକଙ୍କର ମନ ! କିଏ ଜାଣେ କ'ଣ ତାଙ୍କ ମନରେ ଅଛି !

ଅଳ୍ପ ସମୟ ଯାଇନି ତା ଆଶଙ୍କା ସତ ଫଳିଲା—ମାଲିକଙ୍କ ଚାକର ଆସି ଖବର ଦେଲା ଲୁସାନ୍‌କୁ—"ଦଶ ଟଙ୍କା ନେଇ ମଇନାକୁ ଦେଇଦେବାକୁ ହବ ମାଜିଷ୍ଟ୍ରେଟ୍‌ଙ୍କୁ ।" ଲୁସାନ୍‌ର ମନ ବିଗିଡ଼ି ଗଲା । ଭାରି ଦଶ ଟଙ୍କା ମତେ ଦେଖାଉଛନ୍ତି ! ମୋ ସ୍ନେହ ଶ୍ରଦ୍ଧା କୁଆଡ଼େ ଗଲା । ଟଙ୍କା ଜୋରରେ ମୋ ମଇନାକୁ ମୋଠୁ ଅଲଗା କରି ଦେବେ ? ମନ ଭିତରେ ଏତେ କଥା ଭାବିଲେ ବି ମୁହଁ ଫିଟେଇଲା ନାହିଁ । ଖାଲି ଏତିକି କହିଲା—ସାହେବଙ୍କୁ କହିଦେବ "ମୋ ମଇନା ବିକି ହବନି ।" ଚାକରଟି ଠିଆ ହୋଇଛି । ଶୁଣିଲା ପାଖରେ କୋଉଠୁ ମଇନାଟିକୁ ଚିଲ୍ଲେଇ ଚିଲ୍ଲେଇ କହି ଲାଗିଛି, "ମୋ ମଇନା ବିକି ହବନି, ମୋ ମଇନା ବିକି ହବନି ।" ଚାକରଟି ଭାରି ଅପମାନ ହୋଇଗଲା, ସେ ଫେରିଯାଇ ଆଉ ଦି'ପଦ ଲଗାଇ ସବୁ କଥା ମାଜିଷ୍ଟ୍ରେଟ୍‌ଙ୍କୁ ଜଣାଇ ଦେଲା । ସାମାନ୍ୟ ମିସ୍ତ୍ରୀଟାର ଅବଜ୍ଞାରେ ସେ ରାଗିଗଲେ କିନ୍ତୁ ହଠାତ୍ କିଛି ନ କରି ସୁଯୋଗ ଅପେକ୍ଷାରେ ରହିଲେ ।

ଦୁର୍ଭାଗ୍ୟକୁ ଦେଖ । ଘର କାମ ସରି ସରି ଆସୁଚି, ଲୁସାନ୍ ପଡ଼ିଲା ଜରରେ । କେତେଦିନ ଯାଏ ଉଠି ପାରିଲାନି । ନିତି ମୂଲିଆ ସେ । ଜରରେ ପଡ଼ିବାରୁ କାମ ବନ୍ଦ । ତା'ର ତ କେହି କୋଉଠି ନାହିଁ ଯେ ତାକୁ ସାହା ହବ ? ମାଲିକଙ୍କ ଘରୁ କିଛି ଟଙ୍କା ଧାର କରି ଆଣିଲା । ଆଶା ଥିଲା ଜର ଭଲ ହୋଇଗଲେ କାମ କରି ତାଙ୍କ ଧାର ଶୁଝିଦେବ । ସେ ସୁଯୋଗ ତାକୁ ଆଉ ଜୁଟିଲାନି । କେତେଦିନ ଚାଲିଗଲା । ଏଣେ ମାଜିଷ୍ଟ୍ରେଟ୍ ତାଙ୍କ ନୂଆ ଘରେ ଆସି ରହିଲେ । ଗୋଟେ କାନ୍ଥରେ ଲୁସାନ ଅଧା କାମ କରି ଛାଡ଼ିଯାଇ ଥିବାର ତାଙ୍କ ଆଖିରେ ପଡ଼ିଗଲା । ଆଗରୁ ତ ରାଗ ଥିଲା, ସୁବିଧା ମିଳିଗଲା ଏଇଲେ ।

କାମରେ ଖଇରୁ । ପୁଣି ଏତେଦିନ ହେଲା ନେଇଥିବା ଧାର ଶୁଝିନି । ସାଙ୍ଗେ ସାଙ୍ଗେ ଲୋକ ଯାଇ ଲୁସାନ୍‌କୁ ଧରି ଆଣିଲେ । କାମ ଖଇରୁ କଥା ସେ ମାନିଗଲା । ଅଜାଣତରେ ସେ ହୁଏତ ଛାଡ଼ିଯାଇଛି । କିନ୍ତୁ ଧାର ! ତା ପାଖରେ ତ ଏଇଲେ କିଛି ନାହିଁ । ଏତେ ଟଙ୍କା ସେ ଏଇଲେ ଶୁଝିବ କେମିତି ? କେତେଦିନ ହେଲା ଜରରେ ପଡ଼ି ପଡ଼ି ଦେହରେ ଆଉ ଟିକେ ବି ବଳ ନାହିଁ । କାମ କଲେ ତ ଟଙ୍କା ମିଳିବ ।

ମାଲିକ ଏଇ ସୁଯୋଗରେ ମଇନାଟିକୁ ପୁଣି ଥରେ ମାଗିଲେ । ଏତେ ଅସୁବିଧାରେ ମଧ୍ୟ ଲୁସାନ୍ ସେ କଥାରେ ରାଜି ହେଲନି । ସାହେବଙ୍କ ରାଗ ଦେଖେ କିଏ ? ମାଜିଷ୍ଟ୍ରେଟ୍ ଯେତେବେଳେ, ହାତରେ ତ ରାଜଦଣ୍ଡ ଧରିଛନ୍ତି । ସାଙ୍ଗେ ସାଙ୍ଗେ ତାକୁ ଜେଲ୍‌ରେ ପୂରେଇ ଦେଲେ । ବିଗୁରି ପରେ ଦଣ୍ଡ ପାଇବା ଅପେକ୍ଷାରେ ଲୁସାନ୍ ସେଠି ରହିଲା ।

ଏଣେ ଘରଆଡ଼େ ଖୋଜି ଖୋଜି ଲୁସାନ୍‌କୁ ନ ପାଇ ମଇନା ବ୍ୟସ୍ତ ହୋଇ ପଡ଼ିଲା । କୁଆଡ଼େ ଆଉ ତାକୁ ସେ ଖୋଜିବ ? ଜେଲ୍‌ରେ ସବୁ ଘର ତ ସବୁବେଳେ ବନ୍ଦ । କେମିତି ସେ ଜାଣିବ ଲୁସାନ୍ କୋଉଠି ଅଛି ? ଦିନେ ଗୋଟେ ଭଙ୍ଗା ପାଇପ୍ ବାଟେ ଚାଲିଯାଇ ସେ ଲୁସାନ୍ ବଖରାରେ ପହଞ୍ଚିଗଲା । ତାକୁ ଦେଖିଦେଲା ମାତ୍ରେ ଖସିହୋଇ ଉଡ଼ିଯାଇ ତା ଡେଣାରେ ଲୁସାନ୍‌ର ଦୁର୍ବଳିଆ ଦେହକୁ ଆଉଁସି ଲାଗିଲା । ଚଢ଼େଇର ସ୍ନେହରେ ଲୁସାନ୍‌ର ଆଖିରୁ ଲୁହ ବୋହି ଆସିଲା । ମଇନାକୁ କୋଳକୁ ଆଣି କାଳେ କିଏ ଶୁଣି ପକେଇବ ସେଥିପାଇଁ ଫୁସ୍ ଫୁସ୍ କରି କହିଲା, "ଦେଖ୍ ମଇନା, ମତେ ମାରି ମାରି ମାଜିଷ୍ଟ୍ରେଟ କଅଣ କଲେ, ମୋର ଗୋଟେ ହାତ ଭାଙ୍ଗି ଦେଇଛନ୍ତି, ତାଙ୍କର ସେଇ ଗୋଟିଏ ଜିଦ୍, ତତେ ମୁଁ ତାଙ୍କୁ ଦେଇଦିଏ—କିନ୍ତୁ ସ୍ୟା ହବ କେମିତି ? ମୁଁ ତତେ କାହାରିକୁ କ'ଣ ଦେଇ ଦେଇ ପାରିବ ? ଅସମ୍ଭବ ! ତାଙ୍କର ଯାହା ମନ ତା କରନ୍ତୁ କିନ୍ତୁ ମୁଁ ତତେ ଛାଡ଼ି ପାରିବିନି ।" ଚଢ଼େଇଟି ସତେ କି ସବୁ ବୁଝିଗଲା । ତା ଆଖିରୁ ମଧ୍ୟ ଲୁହ ବୋହୁଥାଏ ।

ସେଇଦିନଠାରୁ ନିତି ଲୁସାନ୍ ଆଉ ମଇନାର ଦେଖାହୁଏ ସେଇ ନିର୍ଜନ କୋଠରି ଭିତରେ । କେତେ ସେମାନେ ଦୁଃଖ ସୁଖ ହୁଅନ୍ତି, ମଇନା ଲୁସାନ କୋଳରେ କେତେ ଗେହ୍ଲେଇ ଲୋଟେଇ ହୁଏ, କେତେ ସମୟ ପରେ ପୁଣି ସେଇ ଭଙ୍ଗା ପାଇପ୍ ବାଟେ ଉଡ଼ି ଚାଲିଯାଏ ।

ନିର୍ଜନ କୋଠରି ଭିତରୁ କଥାବାର୍ତ୍ତା ଶୁଣିପାରି ଦିନେ ଜେଲରଙ୍କର ସନ୍ଦେହ ହେଲା । ସେ ଲୁଚି ଲୁଚି ସବୁ କଥା ଦେଖି ସାରି ମାଜିଷ୍ଟ୍ରେଟ୍‌ଙ୍କୁ ଖବର ଦେଲେ । ଖବର ପାଇ ମାଜିଷ୍ଟ୍ରେଟ୍ ସାଙ୍ଗେ ସାଙ୍ଗେ ଜେଲ୍‌ରେ ପହଞ୍ଚିଗଲେ ଓ ମଇନାକୁ ଧରିବାକୁ ଆଦେଶ ଦେଲେ । ମଇନା ଏକଥା ଠିକ୍ ଜାଣିପାରିଲା, ସେମାନେ ସେଠି ପହଞ୍ଚିବା ପୂର୍ବରୁ ଉଡ଼ିଯାଇ

ଘୁର ଉପରେ ବସିଲା ଓ ମାଜିଷ୍ଟ୍ରେଟ୍‌ଙ୍କୁ ଶୁଣେଇ ଶୁଣେଇ ଛିଗୁଳେଇ ଲାଗିଲା, "ମଣିଷଙ୍କୁ ତୁମେ ଠକି ପାରିବ, ଦଣ୍ଡ ଦେଇପାରିବ ହେଲେ ମତେ ନୁହେଁ । କାହିଁ ଧର ତ ମତେ ?" ଏତିକି କହି ସମସ୍ତଙ୍କୁ ବୋକା ବନେଇ ଦେଇ ସେ ଫୁର୍‌କିନା କୁଆଡ଼େ ଉଡ଼ିଗଲା । ଘୁର୍ ଚଢ଼େଇଟାଏ ! ତା'ର ପୁଣି ଏତେ ସାହାସ ! ସେ ତାଙ୍କୁ ଏତେ ଲୋକଙ୍କ ଆଗରେ ଅପମାନ ଦେଇ ଚାଲିଗଲା । ସେ ରାଗରେ ଅନ୍ଧ ହୋଇଗଲେ । ସଙ୍ଗେ ସଙ୍ଗେ ସମସ୍ତ ସୈନ୍ୟସାମନ୍ତଙ୍କୁ ଆଦେଶ ଦେଲେ ତିନଦିନ ଭିତରେ ମଇନାକୁ ଧରି ନ ପାରିଲେ ସମସ୍ତେ ଦଣ୍ଡ ଭୋଗିବେ । ସୈନ୍ୟସାମନ୍ତ ସାରା ସହର ଖେଦିଗଲେ । ହେଲେ ମଇନାର ପତ୍ତା ନାହିଁ । ଲୁସାନ୍ ଜେଲ୍ ଭିତରେ ରହି ମଇନା ପାଇଁ ଠାକୁରଙ୍କୁ ଡାକିବାକୁ ଲାଗିଲା ।

ସେଦିନ ରାତିରେ ପୁଣି ମଇନା ଆସି ଲୁସାନ୍ ପାଖରେ ପହଞ୍ଚିଲା । ହେଲେ ଲୁସାନ୍ ତାକୁ ସାବଧାନ କରିଦେବା ପୂର୍ବରୁ ପାଇପର ମୁହଁ ବନ୍ଦ କରିଦେଇ ଲୋକେ ତାକୁ ଧରିନେଇ ମାଜିଷ୍ଟ୍ରେଟ୍‌ଙ୍କ ପାଖରେ ପହଞ୍ଚିଗଲେ ।

ନିରାହ ଚଢ଼େଇଟି ପିଞ୍ଜରା ଭିତରେ ଚୁପ୍‌ହୋଇ ବସି ରହିଥାଏ । ତାକୁ ଦେଖିଦେଲା ମାତ୍ରେ ମାଜିଷ୍ଟ୍ରେଟ୍‌ଙ୍କ ରାଗ ବଢ଼ିଗଲା । ଦାଢ଼ିକୁ ଆଉଁସି ଆଉଁସି ପଚାରିଲେ, "କ'ଣ ଏଥର କୁଆଡ଼େ ଯିବୁ ? ତତେ ମୁଁ ଯଦି ଏଇଲେ ଭାଜିକରି ଖାଏ ? ଶୁଣି ପାରୁଚୁ ତ ? କିଏ ତତେ ଏଇଲେ ରଖିବ ?"

ଚଢ଼େଇଟି ସ୍ଥିର ଭାବରେ ଉତ୍ତର ଦେଲା, "ହଁ, ମତେ ମାରିକରି ଖାଇଦିଅ । ମଣିଷଙ୍କୁ କାଲୁବାଲୁ କରି ତା' ରକ୍ତ ପିଇବାରେ, ମାଂସ ଖାଇବାରେ ତୁମର ଭାରି ସଉକ୍ । କିନ୍ତୁ ଦିନ ଆସିବ, ଯେତେବେଳେ ସେମାନେ ଏକାଠି ହୋଇ ତୁମ ହାଡ଼ ମାଂସ ଗୁଣ୍ଡାକରି କୁକୁରଙ୍କୁ ବାଣ୍ଟିଦେବେ । ସେଇ ଦିନକୁ ଅପେକ୍ଷା କରି ରହ ।"

ଘୁର ଚଢ଼େଇଟାର ଏ ପ୍ରକାର କଥା ଶୁଣି ମଣିଷ କ'ଣ ଥୟ ଧରି ପାରେ । ପୂଝାରୀକୁ ଡାକି ଆଦେଶ ଦେଲେ ଯାକୁ ଖାଅନ୍ତା ଧରି ତେଲ୍ କଡ଼େଇରେ ପକେଇ ଘୁଣି ଦିଅ । ମତେ ଅପମାନ ଦେବାର ଅର୍ଥ ସେ ବୁଝିବ ।

ଆଦେଶ ପାଇଲା ମାତ୍ରେ ପୂର୍ବାଶ ମଇନାକୁ ନେଇ ଚାଲିଗଲା ଓ ଟାଣି ଟାଣି ତା ପର ସବୁ ଉପାଡ଼ ପକାଇଲା । ତାକୁ କାଟିବାକୁ ଯାଉଚି ହଠାତ୍ ଦେଖିଲା, ଗୋପେଇ ଘରେ ଚୁଲି ନାହିଁ । ରୁମିଆଁ ଧୋଇଥିବା ଚଡ଼େଇଟାକୁ ସେଇଠି ଛାଡ଼ ଦେଇ ଆଉ ଘରକୁ ଚୁଲି ଆଣିବାକୁ ଉଠିଗଲା ।

ମଇନା ଉଡ଼ ପଳେଇବା ପାଇଁ ବହୁତ ଚେଷ୍ଟା କଲା, ହେଲେ କାହିଁ ସେ ଉଡ଼ିବ ? ରକ୍ତ ବୋହୁ ଦେହ ପୋଡ଼ୁଛି । ଅତି କଷ୍ଟରେ ସେ ଡେଇଁ ଡେଇଁ ଯାଇ ଗୋପେଇ ଘର ନାଳ ଭିତରେ ପଶିଗଲା । ପୂର୍ବାଶ ଫେରି ଆସି ତାକୁ ନ ପାଇ ବହୁତ ଖୋଜିଲା । ରୁମିଆଁ ଧୋଇଥିବା ଚଡ଼େଇଟା ତ ଉଡ଼ିଯାଇ ପାରିବନି, ବୋଧେ ଜଳନ୍ତା ଚୁଲି ଭିତରେ ପଡ଼ିଯାଇଚି । ଯା'ହେଉ ଯେମିତି ହେଲେ ତ ମରିବାକୁ ଥିଲା । ଗଲା ଗୋଟେ କଣ୍ଟା ଗଲା ଭାବି ଚୁପ୍ ରହିଲା ।

କେତେଦିନ ସେ ନଳା ଭିତରେ କଟିଲା । ମସିଧା ପାଣି ସଙ୍ଗରେ ଭାସି ଆସୁଥିବା ଖାଦ୍ୟ ପଦାର୍ଥ ଟିକି ଧନ କାଟୁଥାଏ । ଧୀରେ ଧୀରେ ତା ଦେହରେ ପୁଣି ପର କଅଁଳିଲା । ଦିନେ ସେ ଉଡ଼ିକରି ପଦାକୁ ଆସିଲା । ବାହାରକୁ ଆସିଲା ମାତ୍ରେ "ଲୁସାନ୍ କାହିଁ ? ଲୁସାନ୍ କାହିଁ ? ସାରା ସହର ସେ ଖୋଜିବୁଲିଲା । ହେଲେ କୋଉଠି ତା ପତ୍ତା ପାଇଲା ନାହିଁ, ତାକୁ ସେ କେମିତି ପାନ୍ତା ? ଲୁସାନ୍ ତ କୋଉଦିନୁ ଜେଲ୍‌ରୁ ଯାଇ ଜଙ୍ଗଲରେ ଲୁଚିଛି । ମଇନା ସେ କଥା କେମିତି ବା ଜାଣିବ ? ଉଡ଼ ଯାଉ ଯାଉ ରାସ୍ତାରେ ଯାଉଥିବା ପ୍ରତ୍ୟେକଟି ମଣିଷ ମୁହଁକୁ ସେ ନିରୀକ୍ଷଣ କରି ଚାହୁଁଥାଏ । ଚିହ୍ନାଲୋକ ଦେଖିଲେ ଲୁସାନ୍ ବଡ଼ ରାସ୍ତା ଉପରେ ଦେଇ ଉଡ଼ିଯାଉଚି, ହଠାତ୍ ତଳକୁ ଚାହିଁ ଦେଖିଲା ସହରର ଅଧାଲୋକ ଗୋଟିଏ ବଡ଼ ପ୍ରସେସନ୍ କରି ଚାଲିଛନ୍ତି । ଆଗରେ ଦଳେ ଲୋକ ଢୋଲ ପିଟୁଛନ୍ତି ଆଉ ଦଳେ ଠିକ୍ ତାରି ସଙ୍ଗେ ତାଳ ଦେଇ ବଡ଼ ଘଣ୍ଟା ସବୁ ଢଂ ଢଂ କରି ପିଟି ଲାଗିଛନ୍ତି । ଗୋଟାଏ ଅଦ୍ଭୁତ ଧକ୍କାତ ସ୍ୱର ଶୁଭୁଛି । ଲୋକେ ହୋ ହା ଚାଲିଛନ୍ତି ସତେକି ଅନେକ ଦିନର ପୁଞ୍ଜୀଭୂତ ରାଗ ଆଜ କାହା ଉପରେ ସୁଝେଇ ଦେଇ ସାରିଲେ ଫେରିବେ ।

ଆରେ, ଏ କିଏ ସେ ? କାହାକୁ ଲୋକେ ବେଢ଼ିଛନ୍ତି ? ଏ ତ ସେହି ଜଦ୍‌ଖୋର ବଦ୍‌ମାସ୍ ମାଜିଷ୍ଟ୍ରେଟ୍ । କୁଆଡ଼େ ଏମାନେ ନେଇ ଯାଉଛନ୍ତି ତାଙ୍କୁ ?

ଲୋକଙ୍କ କଥାକୁ ସେ ଭଲ କରି ଶୁଣିଲା । ବୁଝିପାରିଲା ମାଜିଷ୍ଟ୍ରେଟ୍‌ଙ୍କୁ ସେମାନେ ଧରିନେଉଛନ୍ତି ତାଙ୍କ ସହରର ଠାକୁରାଣୀଙ୍କ ମନ୍ଦିରକୁ । ଲୋକମାନଙ୍କ ପ୍ରତି ସେ ଯାହା ଅତ୍ୟାଚାର କରିଛନ୍ତି ସେଥିପାଇଁ ଦୋଷ ସ୍ୱୀକାର କରି ପ୍ରାର୍ଥନା କରିବେ ।

ମଇନା ଆଗେ ଆଗେ ଉଡ଼ିଗଲା ମନ୍ଦିରକୁ । ଦୋଷୀକୁ ନେଇ ଲୋକ ମନ୍ଦିରରେ ପହଞ୍ଚିଲେ । ମନ୍ଦିର ଭିତରେ ତିଳ ପକେଇବାକୁ ଯାଗା ନାହିଁ । ଠାକୁରାଣୀଙ୍କ ଆଗରେ ଧୂପ ଦୀପ ଜଳାଇ ଦେଇ ମାଜିଷ୍ଟ୍ରେଟ୍ ଲମ୍ବ ହୋଇ ଗୋଡ଼ତଳେ ପଡ଼ିଥାନ୍ତି, ହଠାତ୍ ଠାକୁରାଣୀଙ୍କ ସ୍ୱର ଶୁଭିଲା—

ସାରା ସହରର ଲୋକ ଆଜି ତୋ ଅତ୍ୟାଚାରରେ ଅତିଷ୍ଠ । ତୁ ଏତେ ପାପ କରିଚୁ ଯେ ତୋର କ୍ଷମା ନାହିଁ । ସେଇ ଲୋକଙ୍କ ଆଗରେ ଏବେଲେ ତୋର ସମସ୍ତ ଦୋଷ ସ୍ୱୀକାର କରି ନ ହେଲେ କୁକୁର ପରି ଲୋକେ ତୋ ଜୀବନ ନେଇଯିବେ ।

ଠାକୁରାଣୀଙ୍କ ଆଦେଶ । ସେ ତ ଅନ୍ୟଥା ହବାର ନୁହେଁ । ନିଜ ପାପ କଥା କ'ଣ ପାପୀକୁ ଅଜଣା ! ଭୂଇଁରୁ ଉଠି କାନ୍ଦ କାନ୍ଦ ତଳେ ମୁଣ୍ଡ ପିଟି ପିଟି ନିଜର ଦୋଷ ଗୋଟି ଗୋଟି କରି କହିବାରେ ଲାଗିଲେ । ମନ୍ଦିର ଭିତର ଶୁନ୍‌ଶାନ୍ । ଏତେ ଲୋକ ଠିଆ ହୋଇଛନ୍ତି, ପାଟି କରିବା ତ ଦୂରର କଥା, ହଲଚଲ ମୁଦ୍ଧା ହଉ ନଥାନ୍ତି କେହି । ଏ କ'ଣ ସେମାନେ ଶୁଣୁଚନ୍ତି ? ପ୍ରତ୍ୟେକଟି ଘଟଣା ଏ ଲୋକ ମନେ ରଖିଛି । ଭୁଲ୍ କରିଚି ବୋଲି ବୁଝି ତଥାପି ଏତେ ଲୋକଙ୍କୁ ଜାଣିଶୁଣି ଦୁଃଖ ଦଉଥିଲା କାହିଁକି ? ଭୂଇଁରେ ମୁଣ୍ଡ ପିଟି ପିଟି ଲହୁ ଲୁହାଣ ହେଲାଣି । ଲୋକଙ୍କ ରାଗ କମି ଆସୁଥାଏ ।

ଠାକୁରାଣୀ ଆଦେଶ ପୁଣି ଶୁଭିଲା । "ବାସ୍, ବହୁତ ହେଲା । ଦୋଷ ସ୍ୱୀକାର କଲେ କ୍ଷମା ମିଳେ । ତୋର ଜୀବନ ରକ୍ଷା କରାଗଲା । ହେଲେ ଲୋକଙ୍କୁ ଦଣ୍ଡ ଦେଲାବେଳେ ଦାଢ଼ି ସାଉଁଳି ସାଉଁଳି ଯୋଉ

ଆନନ୍ଦ ତୁ ପାଉ ସେତକ କେବଳ ମୁଁ ତୋଠୁ ଏଇଲେ କାଢ଼ିନେବ ! ତେବେ ଏକଥା ତ ତୋର ମନେ ରହିବ, ଆଉ ମଧ ସାଧାରଣ ଲୋକଙ୍କ ସହିତ ନିଜକୁ ସମ୍ମାନ ବୋଲି ବୁଝିବୁ । ଖାଲି ସେତକ ନୁହେଁ—ସେଠି ଏଇ ଲୋକଙ୍କ ଆଗରେ ୩୬୫ ଥର ଉଠ ବସ ହୁଅ । ତାହେଲେ ଜାଣିବୁ ଲୋକଙ୍କୁ ସେ ଦଣ୍ଡ ଦେଲାବେଳେ ସେମାନେ କ କଷ୍ଟ ଓ ଅପମାନ ପା'ନ୍ତି ।

ସଙ୍ଗେ ସଙ୍ଗେ ଆରମ୍ଭ ହୋଇଗଲା ଦାଢ଼ି ଉପଡ଼ା ପର୍ବ । ଗୋଟି ଗୋଟି କରି ପ୍ରତ୍ୟେକଟି ଦାଢ଼ୀ ଜଣ ମାଜିଷ୍ଟ୍ରେଟ୍‌ଙ୍କ ମୁହଁରୁ ଉପଡ଼ା ସରିଲା । ମୁହଁରୁ ରକ୍ତ ବୋହି ଯାଉଥାଏ, ୩୬୫ ଥର ବସ ଉଠ ହବା ଆଉ ଡେରି ହେଲାନି । ଓଃ ସେ କ କଷ୍ଟ ! ଆଉ ତାଙ୍କର ଠିଆ ହେବାକୁ ବଳ ନ ଥାଏ । ଦେଖିବା ଲୋକର ଆଖିରେ ଲୁହ ରହିବନି । ଅଚେତ ହୋଇ ପଡ଼ିଯିବା ପୂର୍ବରୁ କେହି ଜଣେ ତାଙ୍କ ନାଁ ଧରି ଡାକିବା ଶୁଣି ସ୍ୱର ଆସୁଥିବା ଦଗକୁ ମୁହଁ ବୁଲେଇ ଚାହିଁଲେ । ଦେଖିଲେ, ଠାକୁରାଣୀଙ୍କ ପଛପଟରେ ମଇନାଟିଏ ବସି ତାଙ୍କ ନାଁ ଧରି ଡାକୁଛି—କେତେ କଥା ମନେ ପଡ଼ିଗଲା ମୁହୂର୍ତ୍ତକରେ ।

ଆରେ ଏ ତ ଲୁସାନ୍‌ର ସେଇ ମଇନା । କେଡ଼େ ଖୁସିରେ କହୁଚ—"ଦେଖ ଦେଖ ମୁଁ ଏଠି ବସିଛି । ଆରବର୍ଷ ତୁମେ ମୋର ସବୁ ପର ଉପାଡ଼ ଦେଇଥିଲ ନା ! ଏ ବର୍ଷ ମୁଁ ତାର ବଦଳା ନେଲି । ତୁମ ଦାଢ଼ୀତକ ଉପାଡ଼ ଦେଇ ନ ଥିଲେ ସେ କଷ୍ଟ ତୁମେ ଜାଣି ପାରି ନ ଥାନ୍ତ । ଲୁସାନ୍ ତୁମର କ ଦୋଷ କରିଥିଲା । ତା ହାତ ଭାଙ୍ଗିଗଲାବେଳେ ତାକୁ କେତେ କାଟିଥିବ । ତୁମ ମୁଣ୍ଡ ଫାଟିଯାଇ ରକ୍ତ ବହୁଚ । ବୁଝିପାରୁଚ ଅନ୍ୟର ଦେହକୁ ଆଘାତ କଲେ ସେ କ କଷ୍ଟ ପାଏ । ଏଥର ମୋ କାମ ଛୁଣ୍ଡିଲା ଥାଅ । ଏଣିକି ଲୋକେ ତୁମ କଥା ବୁଝିବେ ।

ମାଜିଷ୍ଟ୍ରେଟ୍ ମୁଣ୍ଡ ଉଠାଇ ତାକୁ ଭଲ କରି ଚାହିଁବାକୁ ଚେଷ୍ଟା କଲାବେଳକୁ—ଫୁର୍‌ର୍ ··· ମଇନା ଆଉ ସେଠି ନାହିଁ ।

—❧—

# ଇଟା ପୋଡ଼ାଳି

ସହରତଳି ଗାଁଟିଏ । ସାରା ଗାଁର ଲୋକେ 'ଇଟା ପୋଡ଼ାଳି' । ଭାଟି ଭାଟି ଇଟା ପୋଡ଼ି ସହରକୁ ଚାଲାଣ କରନ୍ତି । ଗାଁରେ ଚାଳିଶ ପଚାଶଟି ପରିବାର । ଭଲ ଇଟା ତିଆରି କରନ୍ତି ବୋଲି ସେ ଗାଁ'ର ଖବର ନାଁ ଡାକ । ଯେତେବେଳେ ଦେଖ ଗାଁ ଚାରିକଡ଼ ଇଟା ଭାଟିରୁ ଧୂଆଁ ଉଠୁଥିବ ।

ଇଟା ଭାଟିକୁ ସେମାନେ ଠାକୁରାଣୀ ବୋଲି ମାନନ୍ତି । ସତକଥା । ତାଙ୍କରି ପାଇଁ ତ ସେମାନେ ଏତେ ସୁଖରେ ଅଛନ୍ତି । ଠାକୁରାଣୀ ମନ ନ କଲେ ମଣିଷ ହାତରେ କ'ଣ ବା ଅଛି ? ଯେତେ ସାବଧାନ ହୋଇ ଯୋଗାଡ଼ ଥିଲେ ମଧ ଥରେ ଥରେ ପୁଣି ଭାଟିଟାଯାକ ଇଟା କଞ୍ଚା ରହି-ଯାଇଛି କାହିଁକି ? ନିଶ୍ଚେ ଠାକୁରାଣୀଙ୍କ ମାୟା । କେଉଁଠି କିଛି ବଗିଡ଼ା ରହି ଯାଉଥିବ । ଠାକୁରାଣୀ ଅସନ୍ତୁଷ୍ଟ ହୋଇ ଯାଉଥିବେ ।

ଭାଟିରେ କଞ୍ଚା ଇଟା ଲଦିସାରି ନିଆଁ ଧରେଇବା ପୂର୍ବରୁ ପୂଜା ଦେଇ ଠାକୁରାଣୀଙ୍କ ଆଦେଶକୁ ଅପେକ୍ଷା କରନ୍ତି । ଶୁଭଦିନ ଦେଖି ଧୂପଦୀପ, ମେଣ୍ଢା ବଳି ଦେଇ ସାରି ଠାକୁରାଣୀଙ୍କ ନାଁ ଧରି ଭାଟିରେ ନିଆଁ ଲଗା ହୁଏ । ଏ ତାଙ୍କ ଗାଁ'ର ବହୁଦିନୁ ପ୍ରଚଳିତ ପ୍ରଥା । ତାଙ୍କର ବିଶ୍ୱାସ, ଏ ପ୍ରକାରରେ ଯଦି କିଛି ଅନ୍ୟଥା ହୁଏ, ତେବେ ଭାଟି ହୁଏତ ଭୁଷୁଡ଼ି ପଡ଼ିବ, ନ ହେଲେ ଇଟା ସବୁ ହଳଦିଆ ପଡ଼ିଯାଇ କଞ୍ଚା ନରମ ହୋଇଯିବ । ଏତେ ଅସୁବିଧାରେ ପଶେ କଏ ? ଠାକୁରାଣୀଙ୍କ ସାଙ୍ଗେ କି ଖେଳ ? ତାଙ୍କ ଭାଗ ତାଙ୍କୁ ତ ଦେଇଦେଲେ ହୁଏ ! ଠାକୁରାଣୀ ଖୁସି, ଲୋକେ ବି ଖୁସି ।

ଅଳ୍ପ ବହୁତେ ଗାଁରେ ପ୍ରାୟ ସମସ୍ତଙ୍କର ଅବସ୍ଥା ଭଲ । ଅଭାବ ଅସୁବିଧାବେଳେ ପରସ୍ପରକୁ ସାହା ହୋଇ ଗୋଟିଏ ବଡ଼ ପରିବାର ପରି ଗାଁଟା ସାରା ଖୁସିରେ ଚଳନ୍ତି ।

ଟାପାଇ ବୋଲି ଜଣେ ଧନୀ ଲୋକ ଏମାନଙ୍କଠାରୁ ଅଲଗା । ଧନ ବଳରେ ସେ ଗାଁ ସାରା ଲୋକଙ୍କୁ ନିଜ ଅଧୀନରେ ରଖିବାକୁ ତା'ର ମନ । ଯେତେ ମନେ କଲେ ସେ ସୁଯୋଗ ମିଳୁନି କାହିଁ ? ସମସ୍ତେ ତ ପରିଶ୍ରମୀ । ଖଟି ଖାଉଛନ୍ତି । କିଏ ତାଙ୍କ ହାକିମୀ କାହିଁକି ସହିବ ?

ଲୋକେ ତାଙ୍କୁ ଅଖାତିର୍ କରୁଛନ୍ତି ଟାପାଇ ମନେ ମନେ ତା'ର କାରଣ ଚିନ୍ତା କରିବାକୁ ଲାଗିଲେ—"ଓ, ଠିକ୍ କଥା । ଖାଇବାରେ ତ ଅଭାବ ନାହିଁ । ଭାଟିରୁ ଦି' ପଇସା, ରୋଜଗାର ହଉଛି, ଆଉ ଚିନ୍ତା କ'ଣ ? ଏ ଭାଟିରୁ ରୋଜଗାର ବାଟ ବନ୍ଦ କରିବାକୁ ହେବ । ତେବେ ଏମାନେ ବୁଦ୍ଧି ଶିଖିବେ । ଟାଇପାକୁ ଅପମାନ କଲେ କି ଫଳ ଭୋଗିବାକୁ ହୁଏ, ଗୋଟି ଗୋଟି କରି ସମସ୍ତଙ୍କୁ ଦେଖେଇ ଦେବି—ତେବେ ଯାଇ ଜାଣିବ ।"

ଚାଲିଲା ଦୁର୍ବୁଦ୍ଧିର ଖେଳ । ଟାପାଇ ଗାଁ ଠାରୁ କିଛି ଦୂରରେ ଗୋଟାଏ ଇଟାଭାଟି ତିଆରି କାମ ଆରମ୍ଭ କଲେ । ବିରାଟ ଭାଟି । ଥରେ ଭାଟିରୁ ଇଟା ଉଠିଲେ ସାରା ବର୍ଷ ସହରକୁ ଇଟା ରପ୍ତାନି କରି ହବ । ତାଙ୍କ ଇଟା ଯଦି ଭଲ ଉଛୁରିଯାଏ ନା, କିଏ ଏ ଗୁଟୁକୁରିଆ ଲୋକଙ୍କୁ ଆଉ ପଚାରିବ ? ଘର ଦାଣ୍ଡରେ ଇଟାତକ ଜମା କରି ବସିଥିବେ । କି ଆଉ ଆସି ଜୁଟିବ ନା ଇଟା ବିକ୍ରୀ ହବ ? ଭୋକ ଉପାସରେ ପିଲାଛୁଆ ଗଡ଼ିଲେ ଜାଣିବେ ଟାପାଇ ସାଙ୍ଗରେ ବାଦ କଲେ ଫଳ କ'ଣ ହୁଏ ।

ହାତରେ ପଇସା ଥିଲେ କି ଅଭାବ ? ପଦାରୁ ମୂଲିଆ ମିସ୍ତ୍ରୀ ଆସି ଅଳ୍ପ କାମରେ ଲାଗିଗଲେ । ଚାଲିଲା ଧମାଧମ୍ କାମ । ଅଳ୍ପ ଦିନରେ ଭାଟି ସଜଡ଼ା ହୋଇଗଲା । ଏଣିକି ନିଆଁ ଲଗାହବା କଥା । ଠାକୁରାଣୀଙ୍କ ପୂଜା, ଅର୍ଚ୍ଚନା, ଭୋଗ, ବଳି ସବୁ ଠିକ୍ ଠିକଣାରେ ହୋଇଗଲା । ଭାଟିରେ ଶୁଭ ମୁହୂର୍ତ୍ତରେ ନିଆଁ ଧରା ହେଲା । ଏତେ ବଡ଼ ଭାଟି ଯେ ଧୂଆଁ ଉଠି ସାରା ଆକାଶକୁ ଘୋଟିଗଲା ।

ଗାଁ ସାରା ଲୋକେ ପ୍ରମାଦ ଗଣିଲେ ! ହେ ଠାକୁରାଣୀ ! ଶେଷକୁ ତେଲିଆ ମୁଣ୍ଡରେ ତେଲ ଦବାକୁ ଥିଲା ! ଆମ ସମସ୍ତଙ୍କ ପେଟ କାଟି ଟାପାଇର ପେଟ ବଢ଼େଇବାକୁ ତୁମର ମନ ହେଲା କେମିତି ? ଆମ ପିଲାଏ ଭୋକ ଉପାସରେ ଗଡ଼ିବେ । ଟାପାଇର ନୂଆ ଘର ତୋଳା ହବ ।

ଏଇ କ'ଣ ମୋର ମନ ? ଗୋଟିଏ ପିଲାକୁ ଉପାସରେ ରଖି ଆଉ ଜଣକୁ ଭୂରି ଭୋଜନ କ'ଣ ମା' ଦିଏ ? ଏଇଲେ ଆମେ କ'ଣ କରିବୁ ?" ସମସ୍ତେ ମନେ ମନେ ଠାକୁରାଣୀଙ୍କୁ ଏଇ କଥା ଜଣାଇଲେ ମଧ୍ୟ କାହାର କିଛି କରିବାର ଉପାୟ ନ ଥିଲା ।

ଭାଟିରୁ ଧୀରେ ଧୀରେ ଧୂଆଁ ଉଠିବା କମିଲା । ଇଟା ଥଣ୍ଡା ହେଲା । ଏଥର ଭାଟି ଖୋଲାଯିବ । ଟାସାଇଙ୍କ ମନରେ କି ଯେ ଆନନ୍ଦ ! ଆଜି ସେ ପୋଡ଼ ପିଠା ଭଳିଆ ଗାଢ଼ ଗାଢ଼ ଇଟା ନେଇ ସହରର ତାଙ୍କ ଇଟା ଡିପୋରେ ଜମା କରିଦେବେ । ସହରି ବାବୁମାନେ ପାଖରେ ପାଇଲେ ଏ ପୋଚରା ଗାଁ'କୁ ଆସିବେ ନାଁ ଏ ବୃଦ୍ଧଙ୍କ ଠାରୁ ଇଟା କିଣିବେ । ଦେଖିବ ଏଥର ଟାସାଇକୁ ନ ମାନି ଯିବେ କୁଆଡ଼େ ?

ଇଟା ଭାଟି ଖୋଲା ହେଲା । ଟାସାଇଙ୍କ ଆଶା ଆକାଂକ୍ଷା ପାଣି ଫୋଟକା ଭଳି ମିଳେଇଗଲା । ସବୁ ଇଟା କଞ୍ଚା ହଳଦିଆ । ମୋଟେ ପୋଡ଼ ହୋଇନି । କାହିଁକି ଏମିତି ହେଲା ? ସେ ତ ସବୁ ଠିକ୍ ଠିକ୍ ପୂଜା କରିଛନ୍ତି । ମେଣ୍ଢା ଘୁଷୁରି ସବୁ ତ ନିୟମ ମୁତାବକ ବଳି ଦିଆଯାଇଥିଲା । ଅସୁବିଧା ରହିଲା କେଉଁଠି ? ରାଗରେ ସେ ଅସ୍ଥିର ହୋଇଗଲେ । ମିସ୍ତ୍ରୀ, ମୂଲିଆ ସମସ୍ତଙ୍କୁ ଡକାଗଲା । କେହି ଏହାର ସଠିକ୍ କାରଣ କହିପାରିଲେ ନାହିଁ । ଶେଷରେ ଜଣେ ଲୋକ ଜ୍ୟୋତିଷଙ୍କ ପାଖକୁ ଦୌଡ଼ିଲା । ସେହି ଏହାର କାରଣ କ'ଣ ! କାହିଁକି ଠାକୁରାଣୀ ଅସନ୍ତୁଷ୍ଟ ।

ଜ୍ୟୋତିଷ ମତ ଦେଲା ପୂଜା ଠିକ୍‌ଭାବେ କଲେ କ'ଣ ହେବ ! ଟାସାଇର କୁକୁରପେଞ୍ଚିଆ ମନ ଯୋଗୁ ଏ ଫଳ । ଲୋକଙ୍କୁ ହଇରାଣ କରିବାକୁ ମନ କଲେ ଠାକୁରାଣୀଙ୍କୁ କ'ଣ ଅଛପା ରହନ୍ତା ? ସେ ଯଦି ତା' ଝିଅକୁ ଭାଟି ଠାକୁରାଣୀଙ୍କୁ ବଳି ଦବ, ତେବେ ଯାଇ ଠାକୁରାଣୀ ଖୁସି ହୋଇ ପାରନ୍ତି ।

ଖବର ଶୁଣି ଟାସାଇ ମୁଣ୍ଡରେ ପାହାଡ଼ ଭାଙ୍ଗି ପଡ଼ିଲା, ଏ କି କଥା ! ତା'ର ଗୋଟିଏ ବୋଲି ଝିଅ । ତାକୁ ସେ ଠାକୁରାଣୀଙ୍କୁ ବଳି ଦବ କେମିତି ? ଯେତେ ନିଷ୍ଠୁର ହେଲେ ବି ସେ ବାପ ତ ! ବାପ ହୋଇ

ଧନ ପାଇଁ ଝିଅକୁ କିଏ ବଳି ଦେଇ ପାରେ ? ଆଉ କ'ଣ କିଛି ବାଟ ନାହିଁ ? ପ୍ରଥମେ ସେ ନିରାଶ ହୋଇ ପଡ଼ିଲା ।

ହଠାତ୍ ତା' ମନକୁ କଥାଟିଏ ଜୁଟିଲା—"ହଁ ଝିଅଟିଏ ବଳି ଦବା କଥା ତ ! ମୋ ଝିଅ ବୋଲି କ'ଣ ନିଷ ମନ୍ତ୍ର ହୋଇଛି ? ଯେ କୌଣସି ଗୋଟିଏ ଝିଅକୁ ଆଣି ବଳି ଦେଲେ କ'ଣ ଚଳିବ ନି ? ସବୁ ଝିଅଙ୍କ ରକ୍ତ ତ ସମାନ । ଆଉ ଗୋଟିଏ ତା'ର ପରି ଝିଅଟିଏ ଯୋଗାଡ଼ କରିଦେଲେ ତ ହେବ ।

ଏ କଥା ମନକୁ ଆସିଲା ମାତ୍ରେ ବୁଦ୍ଧି ମଧ୍ୟ ଚଟାପଟ୍ ଯାଇଟି ଗଲା । ରାତାରାତି ଟାସାଇ ଚାଲିଗଲା ବହୁ ଦୂରକୁ—ଯେଉଁଠି ତାକୁ କେହି ଚିହ୍ନି ନାହାନ୍ତି । ସେଇ ଗାଁରେ ଗରିବ ଲୋକଟିଏ । ଶହେ ଟଙ୍କା ନେଇ ଝିଅଟିଏ ଦବାକୁ ରାଜି ହୋଇଗଲା । ସେ କ'ଣ ଜାଣିଛି ବଳି ପଡ଼ିବା ପାଇଁ ତା' ଝିଅ ଯାଉଛି ? ତା' ମନେ କି ବଡ଼ଲୋକ ଘରେ ଚାକରି କରି ରହିବ । ଯାଉ, ଏଠି ତ ଖାଇବାକୁ ପାଉନି । ଦି'ବେଳା ମୁଠେ ପେଟ ପୂରେଇ ଖାଇବାକୁ ପାଇବ ତ ।

ଟାସାଇ ତା'ର ଝିଅ ପରି ପିଲାଟିଏ ପାଇଯାଇଥିବାରୁ ମନ ଖୁସିରେ ଫେରିଲା । ଘରକୁ ଫେରି ନିଜ ଝିଅ ପାଖରେ ସେଇ ଝିଅଟିକୁ ଠିଆ କରେଇ ଦେଇ ଟାସାଇ ଚମକି ପଡ଼ିଲା । ଏ କ'ଣ ଝିଅ ଦି'ଟା ଏକା ଭଳିଆ ଦିଶୁଛନ୍ତି ଯେ ! ସେ ତା' ଉପରୁ ଆଖି ଖସାଇ ନେଲା । ମନ ଟାଣ କଲା । ଯୋଉଥିପାଇଁ ସେ ଆସିଛି, ସେ କାମ ଆଗ ।

ଟାସାଇର ଝିଅଟିଏ ମିଳିଗଲା । ନିଜ ଲୁଗାପଟା ତାକୁ ପିନ୍ଧିବାକୁ ଦେଲା, ସାଙ୍ଗରେ ନେଇ ଖେଳିବାକୁ ବାହାରିଗଲା । ଘରେ ଉତ୍ସବ ଲାଗିଛି । କେତେ ଆଉ କେତେ ଲୋକ ଆସିଛନ୍ତି । ଦିନସାରା ଖେଳିବୁଲି ଦୁହେଁଯାକ ରାତିରେ ଗୋଟିଏ ଖଟରେ ଶୋଇ ପଡ଼ିଲେ । ସକାଳ ହେଲେ ଭଟି ପାଖରେ ପୂଜା ହେବ, ଦେଖିବାକୁ ଯିବେ ।

ନୂଆ ଝିଅଟିକୁ ତ କିଛି ଜଣା ନାହିଁ । ସେ ନିଶ୍ଚିନ୍ତରେ ଶୋଇ-ପଡ଼ିଲା । ହେଲେ ଟାସାଇର ଝିଅକୁ ଆଉ ରାତିସାରା ନିଦ ନ ହୁଏ । ମଣିଷଟିଏ ବଳି ଦିଆଯିବ ଏ କଥା କେମିତି କେଜାଣି ତା' କାନରେ ପଡ଼ିଯାଇଛି । କିନ୍ତୁ କିଏ ସେ ମଣିଷ, କେମିତି ବଳି ଦିଆଯିବ, ଏଇ କଥା

ଦେଖିବା ପାଇଁ ମନରେ ଗୋଟେ ଭୟ ମିଶା ଆଗ୍ରହ ରାତ ସାରା ତାକୁ ଅନିଦ୍ରା କରି ରଖିଲା ।

ସକାଳୁ ସକାଳୁ ଯାଇ ଭାଟି ପାଖରୁ ମିସ୍ତ୍ରୀ ମୂଳିଆଙ୍କୁ ଡାକି ଆଣିବା ପାଇଁ ଟାପାଇ ନୂଆ ପିଲାକୁ କହିଥିଲା ।

ଭାଟି ଦାୟିତ୍ୱରେ ଥିବା ବଡ ମିସ୍ତ୍ରୀ କେତେଜଣଙ୍କ ଛଡ଼ା ଏ ବଳିଦବା କଥା କାହାରିକୁ ଜଣା ନ ଥାଏ । ସେମାନେ ଏତିକି ଜାଣିଥାନ୍ତି, ସକାଳୁ ସକାଳୁ ଝିଅଟିଏ ଏଠିକି ଆସିବ ଓ ସେଇ ହଉଚି ବଳି । ଭୋର ଭୋର ସେ କାମ ଛୁଣ୍ଡିଥିଲେ ଲୋକେ ଆସି ପହଞ୍ଚିଲେ ପୂଜା କାମ ଆରମ୍ଭ ହବ ଓ ସମସ୍ତଙ୍କ ଆଗରେ ମେଣ୍ଢା କୁକୁଡ଼ା ବଳି ଦିଆଯିବ ।

ରାତି ନ ପାହୁଣୁ ସେମାନେ ଉଦ୍‌ବିଗ୍ନ ହୋଇ ଅପେକ୍ଷା କରି ରହିଥାନ୍ତି । ସତକୁ ସତ ରାତି ଜାଙ୍ଗଲୁ ଜାଙ୍ଗଲୁ ଅଛି, ଝିଅଟିଏ ଧୀରେ ଧୀରେ ଭାଟି ଅଡ଼କୁ ଆଗେଇ ଆସିଲା । ମିସ୍ତ୍ରୀମାନେ ତତ୍ପର ହେଇ ଉଠିଲେ । ଝିଅଟି ପାଖରେ ଆସି ପହଞ୍ଚିଲାମାତ୍ରେ ସେ କ'ଣ କହୁଛି ଶୁଣିବାକୁ କାହାରି ବେଳ ନାହିଁ, ତାକୁ ଜବରଦସ୍ତି ଧରିନେଇ ଜଳନ୍ତା ଭାଟି ଭିତରକୁ ପକାଇ ଦେଲେ । ଗୋଟିଏ ମୁହୂର୍ତ୍ତ ଲାଗି କରୁଣ ଚିତ୍କାରଟିଏ ଭାଟି ଭିତରୁ ଶୁଭିଲା । ତା'ପରେ ସବୁ ଚୁପ୍ । ମିସ୍ତ୍ରୀମାନେ ତାଙ୍କ କାମ ଛୁଣ୍ଡି ଗଲା ବୋଲି ଭାବି ନିଶ୍ଚିନ୍ତ ହେଲେ ।

ସକାଳ ହେଇ ଆସିଲା । ଝରକାବାଟେ ସୂର୍ଯ୍ୟଙ୍କର କଅଁଳ କିରଣ ଘର ଭିତରେ ପଡ଼ିଲା ମାତ୍ରେ ଟାପାଇର ନିଦ ଭାଙ୍ଗିଲେ ଓ ଆଜିର କାର୍ଯ୍ୟକ୍ରମ କଥା ମନେ ପଡ଼ିଗଲା । ଝିଅଟି ଭାଟି ପାଖକୁ ଗଲା କି ନାହିଁ ଦେଖିବାକୁ ତର ତର ହୋଇ ସେ ଉଠି ଆସିଲା ଓ ଦେଖିଲା ଖଟ ଉପରେ ଝିଅଟି ନିଶ୍ଚିନ୍ତରେ ଶୋଇଛି, ହେଲେ ତା' ଝିଅ ! ସେ ତ ସେଠି କୋଉଠି କାହିଁ ଦିଶୁନି । ତା ଛାତିରୁ କଅଁଳ ଖସି ପଡ଼ିଲା । ଘରସାରା ଝିଅକୁ ଖୋଜି ଲାଗିଲା ସେ—ନାଃ, କୋଉଠି ହେଲେ ନାହିଁ । "ତେବେ କ'ଣ···ଓଃ, ଭଗବାନ୍ ! ସେ କଥା ନ ହୋଇଥାଉ । ମୋର ପଇସା ଦରକାର ନାହିଁ ପ୍ରଭୁ ! ଭାଟିଯାକ ଇଟା କଞ୍ଚା ହୋଇ ନଷ୍ଟ ହୋଇଯାଉ, ମୋ ଝିଅ ଜୀବନରେ ଥାଉ ।"

ପାଗଳ ପରି ଝାସାଇ ଘାଟି ପାଖକୁ ଦୌଡ଼ିବାକୁ ଲାଗିଲା । ଦୂରରୁ ଘାଟି ପାଖରେ ମିସ୍ତ୍ରୀମାନଙ୍କୁ ଦୁଶ୍ଚିନ୍ତାରେ ବୁଲୁଥିବାର ଦେଖିପାରି ଝାସାଇର ଛାତି ଥରିଗଲା । ପାଦ ଆଉ ଆଗକୁ ଚାଲିଲା ନାହିଁ । ଘୋଷାରି ହୋଇ ହୋଇ ସେ ଆଗକୁ ଚାଲିବାକୁ ଲାଗିଲା ।

ମିସ୍ତ୍ରୀମାନେ ତାକୁ ଆସୁଥିବାର ଦେଖି ତା' ପାଖକୁ ଧାଇଁ ଆସିଲେ ଓ ତାଙ୍କ କଥା ମୁତାବକ ଝିଅଟିକୁ ନଈଁ ଭିତରେ ଉତ୍ସର୍ଗ କରି ସାରିଛନ୍ତି ବୋଲି ଖବର ଦେଲେ ।

ସବୁ ସରିଗଲା । ଝାସାଇ ଜୀବନର ସବୁ ସୁଖ ସତେ କି ସେଇ ଜଳନ୍ତା ଘାଟି ଭିତରେ ପୋଡ଼ି ହୋଇ ପାଉଁଶ ହୋଇଗଲା । ସେ ପାଗଳ ପରି ଝିଅର ନାଁ ଧରି ଡାକି ଡାକି, କାନ୍ଦି କାନ୍ଦି ଘାଟି ଚାରିକଡ଼ ଧୂଳିରେ ଗଡ଼ିବାକୁ ଲାଗିଲା । ହେଲେ ଆଉ କାହିଁ ? ସେଇ କଅଁଳିଆ ସ୍ୱରରେ 'ବାପା' ଡାକ ଚିରଦିନ ଲାଗି ଅବେଳାରେ ସଂସାରରୁ ପୋଛି ହୋଇଗଲା ।

* * *

# ଲୁଣର ଜନ୍ମ

ଚଷାଟିଏ । ତା କ୍ଷେତରେ ଦିନେ କାମ କରୁଛି । ଦେଖିଲା ବହୁତ ଦୂରରେ ସମୁଦ୍ର କୂଳରେ ଗୋଟିଏ ବଡ଼ କୁଦ ଉପରେ ବିରାଟ ସୁନେଲି ଇଗଲ୍ ଚଢ଼େଇଟିଏ ଉଡ଼ି ଆସି ବସି ପଡ଼ିଲା । ସେ ଚାହିଁଛି ଟିକକ ପରେ ଡେଣା ମେଲେଇ ଦେଇ କୁଆଡ଼େ ପୁଣି ଉଡ଼ି ଚାଲିଗଲା । ଚଷାଟି ତା' କାମ ବନ୍ଦ କରିଦେଇ ସେଇଠି ଠିଆହୋଇ ଆକାଶକୁ ଚାହିଁ ଆଖି ପାଇଲାଯାଏ ତାକୁ ଖୋଜିଲା । ନା, ଆଉ ଦିଶିଲା ନାହିଁ । ସେ ଭାବିଲା କୁଆଡ଼େ ଗଲା ଚଢ଼େଇଟା ! ସୁନା ଇଗଲ୍ କୁଆଡ଼େ ପୋତା ଧନ ଥିବା ଜାଗା ଉପରେ ପରା ବସନ୍ତି । ଏ କଥାଟା ମନକୁ ଆସିଲା ମାତ୍ରେ ତାକୁ ଅସ୍ଥିର ଲାଗିଲା । ଆଖପାଖରେ ତ ଆଉ କେହି ଲୋକ ନାହାନ୍ତି । ଇଗଲ୍ ତେବେ ତାକୁଇ ପୋତା ମାଲ୍‌ର ସନ୍ଧାନ ଦେଇଗଲା ନା କଅଣ ? ଆଉ କି ତା ମନ ସମ୍ଭାଳା ହୁଏ ! ଚଞ୍ଚଳ ଚଞ୍ଚଳ ଯାଇ ସେଇ କୁଦାଟା ପାଖରେ ପହଞ୍ଚିଗଲା ।

ଧଇଁସଇଁ ହୋଇ ସେଇ କୁଦାଟାକୁ ଖୋଳିବାକୁ ଲାଗିଲା । କେତେ ବାଟ ଖୋଳିଲା ପରେ ସେ ହାଲିଆ ହୋଇ ପଡ଼ିଲା । କାହିଁ ଟଙ୍କା ସୁନା କିଛି ବାହାରିଲା ନାହିଁ ତ ? ଖାଲି ମୁଣ୍ଡା ମୁଣ୍ଡା ଧଳା ପଥର । ଚକ୍ ଚକ୍ କରୁଛି ଗାତ ଭିତରେ । କ'ଣ ଭାବିଲା ସେଇ ଚକ୍‌ଚକିଆ ଧଳା ପଥରରୁ ଖଣ୍ଡେ ଧରି ସେଇ ପୋତା ଧନରେ ତା' ଭାଗ୍ୟ ବଦଳି ଯିବ ଭାବି ଘରକୁ ଫେରିଲା ।

ଧନରତ୍ନ କ'ଣ ଆଖିରେ ତ କେବେ ଦେଖିନି କି ହାତରେ ଧରିନି । ତା' ଲାଗି ଧନରତ୍ନ ଖାଲି ଶୁଣା କଥା । ସେଇ ଶୁଣା କଥା ସବୁ ମନେ ପଡ଼ିଲା—ପୋତା ଧନ ଯେ ପାଇବ ସେ ଖବର ସଙ୍ଗେ ସଙ୍ଗେ ରାଜାଙ୍କୁ ଜଣାଇବା କଥା ନ ହେଲେ ତ [illegible] ତଳେ ଯିବ ଓ ପ୍ରାଣଦଣ୍ଡ ବି ହୋଇପାରେ । କିଏ କାଳେ ଏ ଖବର ରାଜାଙ୍କୁ ଦେଇଦବ ତ ତା' ପ୍ରାଣ ଗଲା । ରାତିସାରା ମୂର୍ଖକୁ ଆଉ ନିଦ ନାହିଁ ।

ସକାଳୁ ସକାଳୁ ସେହି ପଥରରୁ ବଡ଼ ମୁଣ୍ଡାଟାଏ ଧରି ରାଜଦରବାରରେ ପହଞ୍ଚି, ସୁନା ଇଗଲ୍ ବସିଥିବା କୁଦ ଚକ୍ରକୁ ପାଇଛି ବୋଲି ଦେଖେଇଲା । ରାଜା କୌତୁହଳୀ ହୋଇ ଧଳା ପଥର ଖଣ୍ଡକୁ ହାତରେ ଧରିଲେ । କିଛି ନୂଆ ଲାଗିଲା ନାହିଁ । ହଠାତ୍ ତାକୁ ନାକ ପାଖକୁ ନେଇ ଶୁଙ୍ଘିଲରୁ କେମିତି ଗୋଟାଏ ଖାରିଆ ଗନ୍ଧରେ ରାଜାଙ୍କର ତ ଅଇ ଉଠି ଆସିଲା । ରାଜା ତ ରାଗିଗଲେ । ଜୋର୍‌ରେ ସେ ପଥର ଖଣ୍ଡକୁ ଛୁଟିଦେଲେ ଦୂରକୁ ।

“କ’ଣ ଥଟ୍ଟା କରିବାକୁ ଆଉ ଜାଗା ମିଳିଲାନି ! ପୋତା ଧନ ବୋଲି କହି ମତେ ଠକିବାକୁ ପୁଣି ସାହସ ହେଲା ତୋର ! ଦେଖ ରାଜାଙ୍କ ସାଙ୍ଗେ ଗଲେ ଖେଳିଲେ ଫଳ କ’ଣ ହୁଏ [ ପା ମଜା !” ସାଙ୍ଗେ ସାଙ୍ଗେ ବିଚରା ନିରୀହ ଲୋକଟିକୁ ମୁଣ୍ଡ କାଟିବାର ଆଦେଶ ହେଲା । ରାଜାଙ୍କ ଆଦେଶ । କାହାର ଆଦେଶ । କାହାରି କ’ଣ କହିବାର ଅଛି ! ମିନିଟକରେ କାମ ଶେଷ ।

ଶ୍ଲେଟ ପଥର ଖଣ୍ଡିକ ପାଇଁ ଏତେ କଥା ମୁହୂର୍ତ୍ତକରେ ଘଟିଗଲା, ରାଜାଙ୍କ ପୂଜାରୀ ହୋଇ ସେଠି ସବୁ କଥା ଦେଖୁଥିଲା । କ’ଣ ସେ ପଥର ଖଣ୍ଡକ ! କାହିଁକି ବିଚରା ଗରିବ ଲୋକଟି ତାକୁ ନେଇ ଏତେ ବାଟ ଆସି ଏ ଅବସ୍ଥା ହେଗିଲା । ସେ ପଥରଖଣ୍ଡକୁ ଗୋଟେଇ ନେଇ ଗୋଟିଏ ଥାକ ଉପରେ ରଖିଦେଲା । ଭାବିଲା ପରେ ତାକୁ ଭଲ କରି ଦେଖିବେ । ଆଉ ମନେ ଅଛି ? ଗୃହିଣୀଟିର ମୃତ୍ୟୁ ପରେ ସେ କଥା ସମସ୍ତେ ଭୁଲିଗଲେ ।

ବର୍ଷାଦିନ । ଝଡ଼ବର୍ଷା ଲାଗି ରହିଥାଏ । ଚାରିଆଡ଼ କାଦୁଅ, ସନ୍ତସନ୍ତିଆ—ପୂଜାରୀ ରଖିଥିବା ମୁଣ୍ଡା ପଥରଟା ମଧ୍ୟ ଝାଳେଇ ସେଥିରୁ ଥପ୍ ଥପ୍ କରି ପାଣି ବୋହୁଥାଏ । ତାକୁ ସେଠୁ କାଢ଼ିଆଣି ଫୋପାଡ଼ି ଦବ ବୋଲି କେତେଥର ସେ ଭାବିଲାଣି ଆଉ ମନେ ପଡ଼େନି । ଦିନେ ପୂଜାରୀ ରାଜାଙ୍କ ପାଇଁ ଖାଇବା ଜିନିଷ ଧରି ତର ତର ହୋଇ ସେଇବାଟେ ଯାଉଛି, ସେଇ ମାଟି ମୁଣ୍ଡାରୁ କେଇ ଟୋପା ପାଣି ଗଡ଼ି ଖାଇବା ଜିନିଷ ଉପରେ ପଡ଼ିଗଲା । ପ୍ରଥମେ ସେଗୁଡ଼ା କ ପାଣି ଭାବି ପୂଜାରୀକୁ ଠିକେ ଡର ମାଡ଼ିଲା, ଭାବିଲା ଖାଇବା ଜିନିଷ ସବୁ ଫୋପାଡ଼ି ଦେଇ ଆଉ ଥରେ ରାନ୍ଧିବ । ହେଲେ ସେଥିପାଇଁ ତ ଆଉ ବେଳ ନାହିଁ ।

ରଜା ଜାଣିଲେ କ'ଣ ଅବସ୍ଥା ହବ କେଜାଣି ? ନିରୁପାୟ ହୋଇ ସେ ସେଇ ଖାଦ୍ୟ ନେଇ ରଜାଙ୍କୁ ପରଷିଲା । ରଜା ପ୍ରଥମଥର ପାଟିକି ନେଇ ଖୁସ୍ । ଆରେ ! ଆଜି ଏଥିରେ କ'ଣ ସବୁ ପଡ଼ିଛି ? ପୂଝାରୀ ଡରରେ ଥରିବାକୁ ଲାଗିଲାଣି । କ'ଣ କିଛି ଅସୁବିଧା ହୋଇଗଲା କି ? ରଜାଙ୍କ ରାଗ ନା ଖୁସି ସେ ଠିକ୍ ଠଉରେଇ ପାରିଲାନି । ଚୁପ୍ ହୋଇ ଠିଆ ହୋଇ ଦେଖୁଥାଏ । ରଜା କ'ଣ କିଛି ଚାଖି ଦେଉଥାନ୍ତି ଓ ପୂଝାରୀକୁ ବାରମ୍ବାର ପଚାରି ଲାଗିଥାନ୍ତି ସତ କହ, କ'ଣ ଏଥିରେ ପକେଇଛୁ ? ଏ ସବୁ କାହିଁକି ଏତେ ସୁଆଦ ଲାଗୁଛି । ପୂଝାରୀ ଭାବିଲା—ଏ କି କଥା ! ସବୁଦିନ ପରି ତ ରାନ୍ଧିଛି ଆଉ ତ ଅଧିକା କିଛି ପକେଇ ନାହିଁ ଖାଲି ଯାହା ସେଇ ମାଟି ମୁଣ୍ଡାର କେତେ ଟୋପା ପାଣି ପଡ଼ି ଯାଇଛି । ସେଇ କ'ଣ ସତରେ ଖାଦ୍ୟକୁ ଏତେ ସୁଆଦ କରି ଦେଇଛି ?

ପୂଝାରୀ ତା' ଅନୁମାନ କରୁଥିବା କଥା କହିଲା, ରଜା ବର୍ତ୍ତମାନ ଚିନ୍ତାରେ ପଡ଼ିଲେ । ସତେ କ'ଣ ସେଇ ମାଟି ମୁଣ୍ଡାକ ପୋତା ଧନ । ଖାଦ୍ୟକୁ ସୁଆଦ କରିବା କାମରେ ଲାଗିବା ମସଲା !

ଚାଲିଲା ପରୀକ୍ଷା । ସେ ମାଟି ମୁଣ୍ଡାରୁ କିଛି ପାଣି କରି ଅଣାଯାଇ ଖାଦ୍ୟ ଦ୍ରବ୍ୟରେ ମିଶାଯାଇ ବାରମ୍ବାର ପରୀକ୍ଷା କରାଗଲା । ଫଳକୁ ସତ ସୁଆଦ ବଢ଼ିଗଲା ଶହେ ଗୁଣ ।

ପୋତା ମାଲର ସନ୍ଧାନ ସତରେ ରଜା ପାଇଗଲେ । ଚାଷୀଟି ବତେଇଥିବା ଜାଗାରୁ ଧଳା ମୁଣ୍ଡା ମୁଣ୍ଡା ପଥର ଖୋଳା ହୋଇ ଆସି ଖରାରେ ଶୁଖା ହେଲା । ସେଇ ହେଲା ଧଳା ସଫା ଲୁଣ । ଲୋକେ ଲୁଣର ସୁଆଦ ଜାଣିଲେ । ତା'ର ବ୍ୟବହାର ବଢି ଚାଲିଲା ।

ଯେଉଁ ଚାଷୀଟି ସେଇ ପୋତା ଧନର ସନ୍ଧାନ ଦେଇଥିଲା ତାକୁ ଫାଶୀ ହୁକୁମ ଦେଇଥିବାରୁ ରଜା ବହୁତ ଅନୁତାପ କଲେ । ଚାଷୀଟିର ପରିବାରକୁ ଡ଼କାଇ ଆଣି ସହରରେ ଥଇଥାନ କରିଦେଲେ ଓ ତା' ପୁଅଟିକୁ ଦରବାରରେ ଚାକିରୀଟିଏ ଦେଇ ନିଜ ପାପର ପ୍ରାୟଶ୍ଚିତ କଲେ ।

ଚାଷିଟିର ମୃତଦେହ ପୋତା ହୋଇଥିବା ଜାଗାରେ ଗୋଟିଏ ସୁନ୍ଦର କବର ତିଆରି କରି ତା'ର ଆତ୍ମାକୁ ସମ୍ମାନ ଜଣାଇଲେ । ସ୍ମୃତି ଫଳକରେ ଲେଖାଥିଲା—"ଅନୁଶୋଚନାର ସମାଧି" ।

—o—

# ମୁଣ୍ଡ ଯାଉ କରି ବସିବ ସଙ୍ଗେ ଥିବ ଭାଇ

ସହରଠାରୁ କାହିଁ ଦୂରରେ ଗାଁଟିଏ । ସେଠି ଗୋଟିଏ ଘରେ ଭାଇ ଦି'ଜଣ ଥାନ୍ତି । ଦୁହିଁଙ୍କର କ୍ଷୀର ନୀର ସମ୍ପର୍କ । ବଡ଼ର କଥା ସାନ ଲାଗି ବେଦର ଗାର । ବାପ ମା କୋଉଦିନୁ ସଂସାରରୁ ବିଦା ହେଲେଣି । ଅଳ୍ପ କିଛି ଜମିବାଡ଼ି ଯାହା ଅଛି ହାତରେ ଚଷି ଖଟିରେ ଚଳନ୍ତି । ବଡ଼ ଭାଇ ମାଟିଲଗିରି କରେ ଯେତିକି ସାନ ଖଟେ ସେତିକି । ଦିନ ସାରା ସାନ ବିଲରେ ଖଟିବ । ସନ୍ଧ୍ୟାକୁ ଘରକୁ ଫେରି ରାନ୍ଧିବାଢ଼ି ଭାଇକୁ ଅପେକ୍ଷା କରି ବସିଥିବ । ଭାଇ ଫେରିଲେ ଦିହେଁ ସାଙ୍ଗ ହୋଇ ଖାଇବେ । ଭଲ ମନ୍ଦ କରି ଭାଇ ପାଇଁ ଆଗ ବାଢ଼ିଦେବ । ହେଲେ ଭାଇ କି ଖାଏ ! ପାଖରେ ବସେଇ ସାନ ଭାଇ ପାଟିରେ ଆଗ ଗୁଣ୍ଡାଏ ନ ଦେଲେ ତ ପାଟିକି ଭାତ ଯିବନି । ଛୋଟ ପିଲାଙ୍କୁ ଗେହ୍ଲା କଲା ପରି ସାନକୁ କେତେ ଆଉଁଷି ଦବ । ତା ରୋଷେଇର କେତେ ତାରିଫ୍ କରିବ । ସେଇଥିରେ ସାନ ଭାଇର ମନ କୁଣ୍ଢେ ମୋଟ । ତା' ଭାଇ ତାକୁ କେତେ ଭଲ ପାଏ ! ଦିନ ସାରା ଖଟଣିର ମଜୁରି ତା'ର ସେଇଥିରେ କମିଯାଏ ।

ଗାଁ ବାଲା କେତେ ଶିଖାନ୍ତି । "କିରେ ! ତୁ ଅଲଗା ହୋଇ ଯାଉନୁ ? ତା' ପାଇଁ କାହିଁକି ଏତେ ଖଟୁଚୁ ?"

ରାତିରେ ଭାଇ ଆଉଁଷି ଦେଇଥିବା ଜାଗାରେ ସେ ହାତ ବୁଲାଏ । ଗାଁ ବାଲାଙ୍କୁ ଫୁମ୍ପୁଡ଼ି ଦେଖାଏ । "ତୁମର କ'ଣ ଗଲା, ମୋ ଭାଇ ପାଇଁ ମୁଁ ଖଟିଲି, ତୁମର କାହିଁକି ମୁଣ୍ଡ ବଥଉଛି ।" ସେମାନେ ଚୁପ୍ ହୋଇ ଯା'ନ୍ତି । ଭାବନ୍ତି ବୋକାଟା—ଫଳ ପାଇବ ଯେ ।

କେତେଦିନ ଗଲା । ଭାଇ ବିଭା ହୋଇ ଭାଉଜ ଘରକୁ ଆସିଲା । ସାନର ମନ ଭାରି ଖୁସି । ଏଥିକି ବିଲରୁ ଝାଳନାଳ ହୋଇ ଫେରି ଆସିଲେ ରାନ୍ଧିବାକୁ ପଡ଼ିବନି । ଭଲ ଭଲ ଖାଇବାକୁ ମିଳିବ ।

ତା'ର ଏତେ ଆଶା ସବୁ ପାଣି ଫୋଟକା ପରି କୁଆଡ଼େ ମିଳେଇ ଗଲା ଅଳ୍ପ ଦିନରେ । ଭାଉଜ ତ ନୁହେଁ ଗୋଟିଏ ସାପ । କିଛି କାମର

ଲୁହିଁ । ଧନରତ୍ତ ଖାଲି ଖଟ ଉପରେ ଶୋଇଥିବ । କଥା କଥାକେ ଖାଲି କଳି କରିବାକୁ ତିଆରି । ଭାଇ ତ ତାକୁ କିଛି କହେନି । ଆଉ ସାନ କଥା ପଚୁରେ କିଏ । ତା ଖଟଣି ଆହୁରି ବଢ଼ିଗଲା । ଆଗରୁ ଦୁଇ ଭାଇ ଯାହା ବନ୍ଧାଦେଲେ ଚଳି ଯାଉଥିଲା । ଏଇଲେ ଭାଉଜଙ୍କ ଫରମାସି ମୁତାବକ ରନ୍ଧାବଢ଼ା ଦରକାର । ଟିକେ ହେଲେ ବସି ପଢ଼ିବାକୁ ଫୁରୁସତ୍ ନାହିଁ । ଭାଉଜଙ୍କ କଥାରେ ପଡ଼ି ଭାଇ ମଧ୍ୟ ସବୁବେଳେ ଚିଡ଼ଚିଡ଼ ହବାକୁ ଲାଗିଲେ । ତାକୁ ଆଉ ଘର ଭଲ ଲାଗିଲାନି । ଧନ ରତ୍ତ କେତେରେ କେତେରେ ହେଲେ କିଏ କେତେ ସହିବ !

ଏଣେ କ୍ଷେତରେ କାମ ଲାଗିଥାଏ । ସାନ ଭାଇ ଗୋଟେ କିଆରୀରେ କିଛି ବାଲ୍ଲି ବୁଣିଥିଲା । ସେଇଟା ତାଙ୍କର ସବୁଠାରୁ ସରସ କିଆରୀ । ଭଲ ବାଲ୍ଲି ହେଠି ହୁଏ । ସେଥର କ'ଣ ହେଲା କେଜାଣି କ୍ଷେତ ମଝିରେ ମାତ୍ର ଗୋଟିଏ ବୋଲି ଗଛ ଉଠିଲା । ଆଉ ସାରା କ୍ଷେତ ପଡ଼ିଆ । ଏତେ ପରିଶ୍ରମର ଏଇ ଫଳ ! ତା' ମନ ଭାରି ଦୁଃଖ ହୋଇଗଲା । ତଥାପି ସେଇ ଗୋଟିକିଆ ବାଲ୍ଲି ଗଛଟି କାହିଁକି କେଜାଣି ତାକୁ ଭାରି ଭଲ ଲାଗିଲା । ପ୍ରତିଦିନ ସେଇ ଏକୁଟିଆ ଗଛଟି ପାଖକୁ ସେ ଆସେ । ତା' ମୂଳ ଖୁସାଏ, ଖତ ସାର ଦିଏ, ପାଣି ମଡ଼ାଏ । ଘଡ଼ିଏ ତା' ପାଖରେ ବସେ, ତାପରେ ଘରକୁ ଫେରେ । ଏମିତିରେ କେତେ ଦିନ ଚାଲିଗଲା । ଯତ୍ନ ପାଇ ସେଇ ଗଛଟି ବଡ଼ି ଭାରି ସୁନ୍ଦର ବୁଦାଟାଏ ହେଲା । ଗୋଛାଏ କେଣ୍ଡା ଧରିଲା । କେଣ୍ଡା ଗୁଡ଼ାକ ଫଳ ଭାରରେ ଭାଙ୍ଗି ପଡ଼ୁଥାଏ । ଧୀରେ ଧୀରେ ବାଲ୍ଲି ପାଚିଲା ବେଳ ହେଲା । ଗୋଟିଏ ଗଛରେ ଏତେ ଫଳ ! ଟୋକାର ମନ ଭାରି ଖୁସି । ସେ ବୁଦା ପାଖକୁ ଯାଇ କେଣ୍ଡା ଗୁଡ଼ିକୁ ସାଉଁଳେଇ ଦେଇ ଆସେ ।

ଦିନେ କ୍ଷେତ ଭିତରକୁ ପଶି ଆସୁ ଦେଖିଲା ଖୁବ୍ ସୁନ୍ଦର ବଡ଼ ଚଢ଼େଇଟିଏ କୁଆଡୁ ଉଡ଼ିଆସି ଟପ୍‌ଟପ୍ କରି ପାଚିଲା ବାଲ୍ଲି କେଣ୍ଡା ସବୁ ଛିଣ୍ଡାଇ ଥଣ୍ଟରେ ଧରି ସାଇଁ କରି କୁଆଡ଼େ ଉଡ଼ି ଚାଲିଗଲା । ପୁଣି ଅଳ୍ପ ସମୟ ପରେ ଫେରି ଆସିଲା ସେଇ ବୁଦା ଉପରକୁ । ଟୋକାଟାର ମନ ଭାରି ଖରାପ ହୋଇଗଲା । କାଲିକି ବାଟୁଳି ଖଣ୍ଡାଟାଏ ଆଣି ସ୍ଥାକୁ

ମାରିବାକୁ ହବ । ନ ହେଲେ ଏ ତ ଦିନ ଦି'ଟାରେ ସବୁ ଶେଷ କରିଦବ ।

ଦିନଟା ଯାଗ ଝେକା ପକେଇ, ହାତ ହଲେଇ ହାସୁ ହାସୁ କରି ଚଢ଼େଇ ଫୁରୁଡ଼େଇବାରେ କଟିଲା । ଚଢ଼େଇଟିର ତ ପାଟିରେ ଲାଗିଛି ସେ କ'ଣ ସହଜେ ଛାଡ଼ନ୍ତି ? ଚଢ଼େଇ ତାଙ୍କୁ ଏତେ ହଇରାଣ କରୁଥାଏ ଯେ କେତେବେଳେ ସୂର୍ଯ୍ୟ ବୁଡ଼ିଗଲେ ସେ ଠଉରେଇ ପାରିଲାନି । ଅନ୍ଧାର ମାଡ଼ି ଆସିଲାରୁ ଚଢ଼େଇଟି କୁଆଡ଼େ ଖସିଗଲା । ଚଢ଼େଇ ଆଉ ନ ଆସିଲାରୁ ତା' ମୁଣ୍ଡରେ ଚିନ୍ତା ପଶିଲା । ସେ ଏବେ ଏକା ରାତିଟାରେ ଏତେ ବାଟ ଘରକୁ ଫେରିବ କେମିତି ? ଗାଁ ତ ଯାଇ କାହିଁ କେତେ ବାଟ । ପାହାଡ଼ ତଳେ ତାଙ୍କ କ୍ଷେତ । ଆଉ ପଟଟା ତ ଜଙ୍ଗଲ । ଆଉ ଟିକିଏ ବାଘ ଭାଲୁ ଗଡ଼ିବେ । ସେ କ'ଣ କରିବ ! ଚଢ଼େଇଟା ତାଙ୍କୁ କି ହଇରାଣରେ ପକେଇ ଦେଲାଟି । ଆଉ ତ ଫେରିବାର ବାଟ ନାହିଁ । ରାତି କୋଉଠି କଟେଇବ ଏଇ ଚିନ୍ତା ତାଙ୍କୁ ଘାରିଲା । ଏପଟ ସେପଟ ହୋଇ ବୁଲି ବୁଲି ଗୋଟିଏ ଖୋଲା ଜାଗାରେ ଗଛଟାଏ ଦେଖି ତା ଉପରକୁ ଚଢ଼ିଯାଇ ଡାଳ ଭିତରେ ଜାଗାଟିଏ କରି ଚୁପ୍ ହୋଇ ବସି ରହିଲା । ଗୋଟାଏ ରାତି ତ କଟିଗଲେ ଯାଏ ।

ରାତି ବଢ଼ିବାକୁ ଲାଗିଲା । ଜଙ୍ଗଲ ଭିତରଟା କେମିତି ଗୋଟାଏ ଥମ ଥମ ଲାଗୁଥାଏ । ଡରରେ ଟୋକାର ଆଖି କଣା ଢୋଉ ନଥାଏ । କୋଉଠୁ ଟିକିଏ ଶବ୍ଦ ଶୁଭିଲେ ସେ କାନ ଡେରୁଥାଏ, କିଏ ଆସିଲା କି ? ଘର ମନ ପଡ଼ୁଥାଏ । ଭାଇ ଭାଉଜ ଖାଇ ପିଇ ନିଶ୍ଚିନ୍ତରେ ଶୋଇବେଣି । ତାକୁ ଆଜି ଦୁର୍ଯୋଗ ଥିଲା, ଜଙ୍ଗଲ ମଝିରେ ଗଛ ଉପରେ ରାତି କଟେଇ-ବାକୁ । ପୁଣି ମନକୁ ବୁଝାଉଥାଏ—ହଁଃ, ଘରକୁ ଗଲେ କୋଉ ଆଦର ସୁହାଗ ମାଡ଼ି ପଡ଼ୁଛି ଯେ ! କୁକୁର ମାଙ୍କଡ଼ ପରି ବ୍ୟବହାର ପାଇ ପାଇ ତା' ମନ ତ ଚିଟା ଧରି ଯାଇଥିଲା । ଗଛ ଉପରେ ବସି ପଛେ ଅନ୍ତତଃ ଗାଳିରୁ ତ ଷାହିଁ । ଭାଉଜ କଥାରେ ପଡ଼ି ଭାଇର ବ୍ୟବହାର ବଦଳି ଯିବା କଥା ଭାବି କାନ୍ଦ ମାଡ଼ୁଥାଏ । ହଠାତ୍ ସଁ ସଁ ସଣ ହୋଇ କିଏ ସବୁ ହେଇ ମୂଳକୁ ମାଡ଼ି ଆସୁଥିବାର ଶବ୍ଦ ଶୁଣି ସେ କାନେଇଲା । ହଁ ତ, ଦଳରେ କିଏ ସବୁ ଆସୁଛନ୍ତି । ବେପରୁଆ ଭାବ, ତରତର ଚାଲି, ମାଟି ଦୁଲୁକୁଚି ।

ଦର୍ପଣରେ ତାଙ୍କୁ ଜାବୁଡ଼ି ଧରିଲା । ସେଇ ବାଟ ଦେଇ ବୋଧେ ସେମାନେ ସବୁ କୁଆଡ଼େ ଯିବେ ।

ନାଇଁରେ ! ସେମାନେ ତ ସେଇ ଗଛ ମୂଳେ ଚଉତରା ଉପରେ ଆସି ବସିଲେ ! କଏ ଏମାନେ ! ସେ ଆଖି ମଳି ମଳି ଭଲ କରି ଚାହିଁଲା । ମଝିରେ ମହାବଳ ବାଘ । ଅନ୍ଧାର ଭିତରେ ବି ପଟା ପଟା ଦାଗ ଗୁଡ଼ା ଦାଉ ଦାଉ ଜଳୁଛି । କେଡ଼େବଡ଼ ଲାଞ୍ଜ ଲମ୍ବେଇ ଦେଇଚି ସିଧା କରି । ହାଉଁ ହାଉଁ କରି କ'ଣ ମଝିରେ ମଝିରେ କହୁଚି । ଏ କେଡ଼େ ଗୋଟେ ମୋଟା ଗଧିଆ ପାଖକୁ ଲାଗି ବୁଢ଼ା ଗେଧ ମାଙ୍କଡ଼ଟେ । ଏ କି ଅଦ୍ଭୁତ କଥା ! ଏ ତିନି ମୂର୍ତ୍ତି ସାଙ୍ଗ କେମିତି ହେଲେ ? ମାଙ୍କଡ଼ ପୁଣି କେମିତି ଗୋଡ଼ ହାତ ଲମ୍ବେଇ ବାଘ ପାଖରେ ବସିଚି ଦେଖ ! ସତେ କି କୋଉ କାଳର ପୁରୁଣା ବନ୍ଧୁ ।

ଟିକେ ସମୟ ପରେ ବାଘର ଘଡ଼ଘଡ଼ିଆ ସ୍ୱର ଶୁଭିଲା—"ହେ ମାଙ୍କଡ ଭାଇ, ଗପଟିଏ ହଉ ।"

ମାଙ୍କଡ଼ର ପୁଣି କି ସୁନ୍ଦର ଉତ୍ତର, "ଗପ କ'ଣ ମୋର ଆଉ ମନେ ପଡ଼ୁଛି କରେ ଭାଇ, ଆଜକାଲର ମଜ୍ଜା ଖବର କହୁଚି ଶୁଣ । ତୁମେ ତ ସବୁବେଳେ ଜଙ୍ଗଲ ଭିତରେ ରହିଲ, ଖୋଲା ଜାଗାକୁ ବାହାରିବ ପୁଣି ରାତିରେ, ଗାଁ ଗଣ୍ଡାର ଖବର ତୁମକୁ କ'ଣ ଜଣା ? ମଣିଷଙ୍କ କଥା ଗପଠାରୁ ବି ବଢ଼ିଆ ।"

ବାଘ ଗଧିଆ ଦହେଁ ମାଙ୍କଡ଼ ମୁହଁକୁ ଚାହିଁ ବସିଛନ୍ତି । ମାଙ୍କଡ଼ ଆରମ୍ଭ କଲା—ଏଇଠୁ ସିଧା ଦକ୍ଷିଣକୁ ଗଲେ ଗାଁଟିଏ । ଗାଁର ଜଣେ ଧନୀ ଲୋକର ଝିଅଟିଏ ବାଧିକା ପଡ଼ିଚି । କେତେ ଡାକ୍ତର ବଇଦ ଲାଗିଛନ୍ତି, କେହି ସେ ରୋଗକୁ ଚିହ୍ନି ପାରୁ ନାହାନ୍ତି । ଆଉ ଔଷଧ ଦେବେ କ'ଣ ! ଭାରି ସୁନ୍ଦରିଆ ଝିଅଟିଏ; ହେଲେ ଆଉ ଅଳ୍ପ ଦିନ ତା ପରମାୟୁ । ବାପ ମା ଦିନରାତି ମୁଣ୍ଡ ବାଡ଼େଇ ହଉଚନ୍ତି । ବାପ କହୁଚି ଯିଏ ତା' ଝିଅକୁ ଭଲ କରି ଦବ, ଝିଅକୁ ତ ତାକୁ ବାହା କରିଦେବ ପୁଣି ତା'ର ସବୁ ସମ୍ପତ୍ତି ଜୋଇଁକୁ ଦେଇ ଦେବ । ହେଲେ କ'ଣ ହବ ? ମଣିଷ ଗୁଡ଼ାକ ତ ବୋକା । ତାଙ୍କୁ କ'ଣ ଏ ରୋଗର ଔଷଧ ଜଣା ଯେ ସେମାନେ ଝିଅକୁ ଭଲ କରିବେ ନା ସମ୍ପତ୍ତି ଭୋଗିବେ ?

ଟୋକା ଗଛ ଉପରୁ ଭଲକରି କାନ ଡେରିଲା । କହନ୍ତା କ ଭଲି ସେ ଔଷଧର ନାଁଟା—ନାଃ, ସେମାନେ ଅନ୍ୟ ଗପ ପକେଇଲେ । କିଛି ସମୟ ଗଲା, ହଠାତ୍ ବାଘ ପଚାରିଲା, "ମାଙ୍କଡ଼ ଭାଇ, ଆମେ ଯିବା ମଣିଷ ହୋଇଥିଲେ ଔଷଧ ଦେଇ ଝିଅକୁ ଭଲ କରି ବାହା ହୋଇ ରହିଥାନ୍ତେ, ନ ହେଲେ ବା ଔଷଧଟା କ'ଣ ଟିକେ କୁହ ଶୁଣିଥିବା ।"

ମାଙ୍କଡ଼ ଆରମ୍ଭ କଲା—ସେ ତ ଆହୁରି ମଜା କଥା । କିଛି ତ ଦୂରର କଥା । ପଇସାଟିଏ ବି ଖର୍ଚ୍ଚ ନାହିଁ । ହେଉଛି ଭାଇ, ପିଠି ମଝି ବାଆଁ ହାଡ଼ ଉପରେ ହାତ ଘଷି ମଳି ଟିକେ କାଢ଼ିବ, ସେଥିରେ ତିନୋଟି ବଟିକା କରିବ । ତାକୁ ନେଇ ଝିଅଟିକୁ ଖୋଇଦେଲେ ତ ସେ ସେଇକ୍ଷଣି ଉଠି ବସିବ । ଆଃ, ଯାହା ସୁନ୍ଦର ଝିଅଟିଏ ନା, ମୁଁ ହେଲେ ମଣିଷଟାଏ ହୋଇଥାନ୍ତି । ତିନକ ତିନହେଁ ହସାହସି ହେଲେ ଏ କଥାରେ । ଗୁଡ଼ରେ, ଆମକୁ କଅଣ ମିଳିବ ସେଥିରୁ—ତା ପରେ ପୁଣି ପଡ଼ିଲା ବଣ ଭିଇଜ କଥା । କୋଉ ଗଛରେ ନୂଆ ଫଳ ପାଚିଛି ମାଙ୍କଡ଼ କହିଲା ବେଳକୁ ବାଘ କହିଲାଣି କୋଉଠି ମିରିଗ ନୂଆ ଛୁଆ କରିଛି । ମିରିଗ ଛୁଆ ନାଁ ଶୁଣି ଗଧିଆର ପାଟି ଲାଳେଇ ଯାଉଛି । ସେ ତରତର କରି ମିରିଗ ଠିକଣା ପଚାରିବାରେ ଲାଗିଛି । ଏମିତି ଗପ ହଉ ହଉ ରାତି ପାହି ପାହି ଆସିଲାଣି ।

ଟୋକା ଗଛ ଉପରେ ବସି ମନ ସ୍ଥିର କରୁଥାଏ । ତିନୋଟି ବଟିକା ! ମୋ ପିଠିରୁ ଯାହା ମଳି ବୋହୁଛି ସେଥିରେ ତ ଲକ୍ଷେ ବଟିକା ହବ । କେତେବେଳେ ତିନି ବନ୍ଧୁ ଏ ଜାଗା ଛାଡ଼ିଲେ ସେ ଦକ୍ଷିଣ ଦିଗକୁ ମୁହାଁଇବ । ଧନ୍ୟ ଲୋକର ସୁନ୍ଦରୀ ଝିଅ ସେଇ ତା'ର ଚିନ୍ତା ।

ଦିନ ହବା ଆଗରୁ ତିନି ସାଙ୍ଗ ବଣ ଭିତରକୁ ଡ଼ିଆଁ ମାରି ଦେଲେ । ଟୋକା ଚାରିଆଡ଼କୁ ନିରେଖି ଦେଖିଲା । ନାଃ ଆଉ ଡରିବାର କିଛି ନାହିଁ । ଧୀରେ ଧୀରେ ଗଛରୁ ଓହ୍ଲେଇ ପଡ଼ି ଆଗ ଔଷଧ ତିଆରି କଲା ଓ ବାହାରି ପଡ଼ିଲା ଏକମୁହାଁ ହୋଇ ସେଇ ଗାଁ ଆଡ଼େ ।

ଗାଁ ମୁଣ୍ଡରେ ପହଞ୍ଚିଲାରୁ ନୂଆ ଲୋକ ଦେଖି ଗାଁ ବାଲାଏ ଦୋହରେଇ ଦୋହରେଇ ଜମିଦାରଙ୍କ ଝିଅର ଦେହ ଖରାପ ଓ ଭଲ କରି ଦେଲେ ଜମିଦାର କହିଥିବା କଥା କହି ଲାଗିଲେ ।

ଲୋକଙ୍କଠାରୁ ଠିକଣା ବୁଝି ହୋକା ଯାଇ ପହଞ୍ଚିଲେ ସିଧା ଜମିଦାରଙ୍କ ଘରେ । ତାଙ୍କୁ ସେ ଘରର କାନ୍ଦବୋବାଳି ଶୁଭୁଚି । ନାଁ ଆଉ ଡେରି କରିବା କଥା ନୁହେଁ । ବେଗିଣୀ ଝିଅଟି ପାଖରେ ପହଞ୍ଚିଗଲା । ଯେମିତି ବଟିକା । ଓଡ଼ନାଟି ଖୋଲି ଦେଇଚି ସତେକି ମେଳକ୍ । ଝିଅଟି ସାଙ୍ଗେ ସାଙ୍ଗେ ଝାଡ଼ଝୁଡ଼ ହୋଇ ଉଠି ବସିଲା ।

ଆଗରୁ ତ ସବୁ ସରଞ୍ଜାମ ସଜଡ଼ା ହୋଇ ରହିଥିଲା । ଆରମ୍ଭ ହୋଇଗଲା ବାହାଘର ।

ଏଣେ ସାନ ଭାଇ ଘରକୁ ନ ଫେରିଲାରୁ ଭାଇ ଭାଉଜଙ୍କ ମୁଣ୍ଡ ଖରାପ । ଘର ବାଡ଼, ଗାଈ ଗୋରୁ କିଏ ସେ ସବୁ କାମ କରିବ ? ଭାଉଜ ଆଉ ଭାଇକୁ ବସେଇ ଉପରେ ଦେଲାନି । ଦିନ ସାରା ଗାଁର ସବୁ ଘର ଖୋଜିଲେ, ଭଗିନୀର କାଳେ କାହା ଘରେ ରହି ଯାଇଥିବ । ନିରାଶ ହୋଇ ସନ୍ଧ୍ୟାବେଳକୁ ଭାଇ ବାଙ୍କିଖେତ ଆଡ଼କୁ ମୁହାଁଇଲା । ସେଠି ପହଞ୍ଚିଲା ବେଳକୁ ରାତି ହୋଇ ଗଲାଣି । ଭାଇ ତ ଦେଖା ନାହିଁ, କିନ୍ତୁ ସେଠୁ ରାତିରେ ଏକା ଫେରିବ କେମିତି ? ମନେ ମନେ ସାନ ଭାଇ ଓ ସ୍ତ୍ରୀକୁ ବୁଦ୍ଧେ ଗାଳିଦେଇ ରାତି କଟେଇବା ପାଇଁ ଜାଗା ଖୋଜି ବୁଲିଲା । ଶେଷରେ ସେଇ ଗଛଟି ତା ମନକୁ ପାଇଲା ଯେଉଁଠିରେ ବସି ସାନ ଭାଇ ପୂର୍ବେ ରାତି କଟେଇଥିଲା । ସେ ଚଢ଼ିଯାଇ ସ୍ଥିର ହୋଇ ବସି ରହିଲା । ଦୂରରୁ ବାଘ ଗର୍ଜନ ଶୁଭୁଥାଏ ।

ତାଙ୍କର ତ ଖଟି ଜାଗା । ବାଘ, ମାଙ୍କଡ଼, ଗଧିଆ ତାଙ୍କ ବେଳ ହେଲାରୁ ଆସି ସେଠି ପହଞ୍ଚିଗଲେ । ପୁଣି ଆରମ୍ଭ ହେଲା—‘‘ମାଙ୍କଡ଼ ଭାଇ ଗପଟିଏ କହ ମ !”

ମାଙ୍କଡ଼ ଆରମ୍ଭ କଲା—ବୁଝିଲ ନା ଭାଇ, କାଲି ଏଇ ଗଛରେ ମଣିଷଟିଏ ନିଶ୍ଚୟ ବସିଥିଲା । ଆମ କଥା ଶୁଣି ତା ଭାଗ୍ୟ ଲେଉଟିଲା । ପୁଣି ଆଜିକା କଥା ଶୁଣି ଯଦି ଆଉ କିଛି ଗୋଳମାଳ ବାହାରେ, ଆମ ବଣ ରାଇଜ କଥା ଶୁଣି ଯଦି ଆମକୁ ହଇରାଣ କରେ, ତେବେ କଥା ସରିଲା । ବରଂ ଚାଲ ଆଜି ଆଗ ଏ ଗଛକୁ ଭଲକରି ପରଖିବା କିଏ ସେଠି ଅଛି କି ନାହିଁ ଦେଖି ସାରିଲେ ଆମ ଗପ ଆରମ୍ଭ ହବ ।

ଏ କଥା ଶୁଣି ଗଛ ଉପରେ ବଡ଼ ଭାଇର ଦେହ ବରଡ଼ା ପତ୍ର ପରି ଥରିବାକୁ ଲାଗିଲା । ତା ଥରାରେ ଗଛ ଡାଳ ହଲିବାକୁ ଲାଗିଲା ଓ ତିନି ସାଙ୍ଗ ତାକୁ ଚଟ୍‌କନା ଦେଖି ପକାଇଲେ ।

ବୁଢ଼ା ଗେଧ ଖେପାମାରି ଗଛ ଉପରକୁ ଚଢ଼ିଯାଇ ମଣିଷଟାକୁ ତଳକୁ ପେଳିଦେଲା—"ଦେ ବାଘ ଭାଇ, ଏ ଗ୍ରେରକୁ ଚଞ୍ଚଳ ଖାଇ ଶେଷ କରିଦେ । ଘୁର ମଣିଷଟାଏ । ଆମ ଜଙ୍ଗଲ ଭିତରେ ପଶି ଲୁଚି ଛପି ଆମ କଥା ଶୁଣିବାର ଫଳ ପାଉ ।

ବାଘ ମନା କଲା । ମୁଁ ଏଇଲେ ଖାଇବିନି । ତା ଦେଖାଦେଖି ଗଧିଆ ମଧ୍ୟ ମନା କରିଦେଲା । ଏ କଥା ସବୁ ଶୁଣିବାକୁ ମଣିଷଟାର ଚେତା ନ ଥିଲା । ସେମାନେ ରାଗରେ ତାକୁ ଘୋଷାରି ଘୋଷାରି ପାହାଡ଼ ଉପରକୁ ନେଇଗଲେ । କୁଟିକୁଟି କରି ତା ମାଂସ ସମସ୍ତେ ବାଣ୍ଟି ନେଲେ । ତା'ର ମୁଣ୍ଡଟା ପଡ଼ି ରହିଲା ।

ପରଦିନ ସାନଭାଇ ବୋହୂକୁ ଧରି ଗାଁକୁ ଫେରିଲା । ଭାଇକୁ କେତେ ଖୋଜିଲା । ପାହାଡ କଡ଼ରେ ଭାଇର ଖଣ୍ଡିଆ ଖାବରା ମୁଣ୍ଡଟା ପଡ଼ିରହିଥିବାର ଦେଖି ସବୁ କଥା ତାକୁ ଜଳଜଳ ଦିଶିଗଲା । ଭାଇ ତା'ର ସେଇ ତିନି ସାଙ୍ଗଙ୍କ ହାବୁଡ଼େ ପଡ଼ିଛି ଏଥିରେ ତା'ର ଆଉ ସନ୍ଦେହ ରହିଲା ନାହିଁ ।

ଭାଇର ସ୍ନେହ ଆଦର ଆଉଁସା ମନେ ପକେଇ କେତେ କାନ୍ଦିଲା ।

'ସୁଖ ଯଦି କରି ବସିବ ସଙ୍ଗେ ଥିବ ଭାଇ' ଦୁଃଖ ବେଳେ ସାହାସ ଦବା ପାଇଁ ତାର ଆଉ କେହି ରହିଲେ ନାହିଁ ।

*

# ଅଭିଶପ୍ତା ପରୀ

ଗାଁ ଶେଷ ମୁଣ୍ଡରେ କୋଉ ଦିନର ପୁରୁଣା ଭଙ୍ଗା ଇଟା ଘରଟିଏ । ଅଧଏ ଭୁଷୁଡ଼ି ପଡ଼ି ବଖରାଏ ଘର ପରି ହୋଇଯାଇଛି । ଶୀତ କାକରରୁ ରକ୍ଷା ପାଇବା ପାଇଁ ଏକୁଟିଆ ମଣିଷଟିଏ ସେଠି ଥାଏ । ତା'ର ଘର କି ଲୋଡ଼ା ! ଦିନରେ ଗଣ୍ଡେ ଫୁଟେଇ ଖାଇଦେଇ ଦୋକୁ ବାହାରି ଯିବ ଯେ ଫେରୁ ଫେରୁ ରାତି । କୌଣସିମତେ ମୁଣ୍ଡ ଗୁଞ୍ଜି ଶୋଇପଡ଼ିବା କଥା । ବରଷା ମାଡ଼ରୁ ରକ୍ଷା ପାଇବା ପାଇଁ ତାଟି ଖଣ୍ଡେ ତେରଛ କବାଟ କରିଥାଏ । କ'ଣ ତା'ର ଅଛି ଯେ କିଏ ଚୋରେଇ ନେବ ।

ଦିନବେଳେ ଗାଁରେ କାହାର ମଜୁରି ଲାଗେ । ମଜୁରି ନ ମିଳିଲେ ଦିନ ପାଖ ଜଙ୍ଗଲରୁ କାଠ କାଟି ଆଣି ବିକେ । ସେଇଥିରେ ଯାହା ମିଳିଲା । ଦିନ ସାରା ଖରା ବର୍ଷାରେ ବୁଲିଲେ ବି ଘରକୁ ଫେରିବାକୁ ତା'ର ମନ ହୁଏନି । କି ଘର ସେ ! କିଏ ଅଛି ସେଠି ! କାହାପାଇଁ ଫେରିବ ? ପଦେ ଭଲ କଥା କହିବାକୁ ବା ତା' ଦୁଃଖରେ ଭାଗ ନେବାକୁ ତା'ର କେହି ନାହିଁ । ଭାରି ଦୁଃଖୀ ଲୋକଟିଏ । ସଂସାରରେ ଏକୁଟିଆ ଲୋକଠାରୁ ଦୁଃଖୀ କେହି ନାହିଁ ।

ପେଟରୁ କାଟି ପଇସାଏ ପଇସାଏ କରି ସେ ପାଞ୍ଚଟି ଟଙ୍କା ସଞ୍ଚୟ କରିଥିଲା । ସବୁଦିନେ ତାକୁ ଥରେ ଗଣି ପୁଣି ଲୁଚେଇ କରି ରଖିଦିଏ । କ'ଣ ଗୋଟିଏ ଭଲ ଦିନ ଆସିଲେ ସେଇ ଟଙ୍କା ପାଞ୍ଚୋଟି ଖର୍ଚ୍ଚ କରିବ-ବୋଲି ନିତି ମନେ ମନେ ବିଚାର କରେ । ତା'ର ଆଉ ଭଲ ମନ୍ଦ ଦିନ କ'ଣ ? ସବୁଦିନ ତ ତା'ପାଇଁ ସମାନ ।

ନୂଆ ବର୍ଷ ପାଖେଇ ଆସୁଥାଏ । କେବେ ତ ସହର ଦେଖିନି । ଶୁଣିଥାଏ ସହରରେ ନୂଆବର୍ଷ ଆରମ୍ଭ ଦିନ ଲୋକେ ଭାରି ମଉଜ କରନ୍ତି । ଘରଦ୍ୱାର ସଜାସଜି କରି ବନ୍ଧୁ ବାନ୍ଧବ ସଙ୍ଗରେ ଖିଆପିଆ ମଉଜରେ ନୂଆ ବର୍ଷ ଆରମ୍ଭ କରନ୍ତି । ସେଠି କ'ଣ ହୁଏ ଦେଖିବାକୁ ତା'ର ଭାରି ମନ ହେଲା ।

ସେଦିନ ସକାଳୁ ସକାଳୁ ସେ ଯାଇ ସହରରେ ପହଞ୍ଚିଲା । ଦୋକାନ ବଜାର ର ସାଜସଜା ଦେଖି ତା' ଆଖି ଖୋସି ହୋଇଗଲା । ଲୋକ ଗହଳରେ ରାସ୍ତାଘାଟ ଗହଗହ କରୁଛି । ଦୋକାନମାନଙ୍କରେ ଜିନିଷ କିଣିବା ପାଇଁ ଲୋକଙ୍କର କି ଭିଡ଼ ! ଚକଚକିଆ ପୋଷାକ ପିନ୍ଧି ସତେ କି ସମସ୍ତେ ଜଳୁଛନ୍ତି । ନିଜର ମଇଳା ଛିଣ୍ଡା ଜାମାକୁ ଚାହିଁ ଦେଇ ତା' ମନ ଖରାପ ହୋଇଗଲା । ଏ ଲୋକ ଗହଳି ଭିତରେ ପଶିବାକୁ ତାକୁ ମାଡ଼ ମାଡ଼ ପଡ଼ିଲା । ପକେଟ ଭିତରେ ପାଞ୍ଚଟଙ୍କା ଖନ୍‌ଖନ୍ ହେଉଛି । ମନ ହେଉଚି କ'ଣ ସବୁ କିଣି ପକାନ୍ତା ସେଇ ଲୋକମାନଙ୍କ ପରି । ହେଲେ ପାଞ୍ଚଟା ଟଙ୍କାରେ କ'ଣ ହବ ? ବଡ଼ ବଡ଼ ଦୋକାନ ଭିତରେ ପଶିବାକୁ ତା'ର ସାହସ ହେଲାନି । ରାସ୍ତାର ଦି' କଡ଼କୁ ଚାହିଁ ଚାହିଁ ସେ ଆଗକୁ ଆଗକୁ ଚାଲିଥାଏ ।

ଭଲକି ଭଲ ଜଳଖିଆ ଦୋକାନ । ତା' ପାଟି ଲାଳେଇ ଯାଉଥାଏ । ସେ ମନକୁ ବୁଝେଇଲା । ଖାଇ ଦେଲେ ତ ସରିଯିବ । ତା' ସଞ୍ଚିତ ଧନରେ ସେ ଏମିତି ଗୋଟିଏ ଜିନିଷ କିଣିବ ଯାହା ତା' ପାଖରେ ସବୁଦିନ ପାଇଁ ରହିବ ସହର ବୁଲା ଓ ନୂଆବର୍ଷର ସ୍ମୃତି ହୋଇ । କ'ଣ ସେ କିଣିବ ? ସବୁ ତ ତାକୁ ନୂଆ ଲାଗୁଛି ।

କେତେ ବାଟ ଗଲା ପରେ ଗୋଟିଏ ଛୋଟିଆ ଦୋକାନ ଦେଖିଲା । ପଦାରେ ସୁନ୍ଦର ସାଜସଜ୍ଜା ହୋଇଚି, ହେଲେ ବେଶୀ କେହି ଖରିଦ୍‌ଦାର ନାହାନ୍ତି । ସନ୍ତର୍ପଣରେ ସେ ଭିତରେ ପଶିଲା । କ'ଣ ସେଠି ମିଳେ ? ସେ ଭଲ କରି ଚାରିଆଡ଼କୁ ଚାହିଁଲା । ତା' ମନ ମାଫିକଣିଲା ପରି ଜିନିଷ ସେ କିଛି ଦେଖି ପାରିଲାନି ।

ହଠାତ୍ କଡ଼କିଆ କରି କାନ୍ଥରେ ଟଙ୍ଗା ହୋଇଥିବା ଗୋଟିଏ ସୁନ୍ଦରୀ ସ୍ତ୍ରୀର ଛବି ଉପରେ ତା' ଆଖି ପଡ଼ିଗଲା । ବାଃ, କେଡ଼େ ସୁନ୍ଦରୀଟିଏ ମ ! ସେ ଛବିଟି ଉପରୁ ଆଉ ଆଖି ଫେରେଇ ପାରିଲାନି ସେ । ସେମିତି ସ୍ଥିର ହୋଇ ସେ ଛବିଟି ଦେଖି ଲାଗିଥାଏ । ସ୍ତ୍ରୀଲୋକଟିର ହସିଲା ଆଖି ଦୁଇଟି ସତେ କି କଥା କହୁଚି—'ମତେ ନେଇଯାଅ, ଏ ଦୋକାନର ହାଉଯାଉ ଭିତରେ ରହିବାକୁ ମତେ ଭଲ ଲାଗୁନି, ଘରକୁ ନେଇଯାଅ କି ମନ ପୂରେଇ ଦେଖିବ ।' ଲୋକଟି ଛବିଟିକୁ

କିଣିନେବା ଲାଗି ମନ କଲା । ଦୋକାନୀଟି ଲୋକର ମନକୁ ବେଶ୍ ପଢ଼ି ପାରିଲା । 'ନେବ କି ? ତା' ଦାମ୍ ଦେଖନ୍ତୁ, ଲେଖା ହୋଇଛି ତା' ତଳେ—ଚାରି ଟଙ୍କା !'

ଠିକ୍ କଥା—ଆହୁରି ଟଙ୍କାଟେ ବଳି ପଡ଼ିବ । ସେଥିରେ କିଛି ଖାଇବା ଜିନିଷ କିଣି ନେଲେ ନୂଆ ବର୍ଷ ପାଳନ ହେଲା—ଆଉ କ'ଣ ଦରକାର ? ତା'ର ଯେତିକି ପୁଞ୍ଜି, ସେଥିରେ ଯା ଠାରୁ ଆଉ ଭଲ ଜିନିଷ ମିଳିବନି ।

ଛବିଟିକୁ କିଣି ବଡ଼ ଯତ୍ନରେ ଧରି ସେ ପଦାକୁ ବାହାରି ଆସିଲା । ଏଣିକି ଗାଁକୁ ଫେରିବା କଥା । ଆଉ ତା'ର ସହରରେ ମନ ଲାଗିଲାନି । କେମିତି ତାକୁ ନେଇ ତା ଶୋଇବା ଜାଗାରେ ମୁଣ୍ଡ ଉପରେ ସୁନ୍ଦର କରି ଟାଙ୍ଗିବ, ସେଇ ଚିନ୍ତାରେ ତାକୁ ବାଟଚଲା ବାଧା ଆଉ ଲାଗିଲାନି । ସେ କେତେବେଳେ ଆସି ଗାଁରେ ପହଞ୍ଚିଗଲା ଜାଣି ପାରିଲାନି । ସନ୍ଧ୍ୟା ହୋଇ ଆସୁଛି । ଘରେ ପହଞ୍ଚି ଆଗ କଣ୍ଟାଟିଏ ମାରି ଛବିଟିକୁ ଦୁଆର ମୁହଁ ସାମ୍ନାରେ ଆଖି ପଡ଼ିବା ଜାଗାରେ ଯତ୍ନ କରି ଟାଙ୍ଗିଲା । ଖୁସିରେ ତ ତା' ପେଟ ପୂରି ଯାଇଛି ଆଉ କ'ଣ ଭୋକ ଅଛି ? ସେ ରାତିରେ ରନ୍ଧା ବଢ଼ା ବନ୍ଦ । ସେଇ ଛବିଟି ଆଡ଼କୁ ଚାହିଁ କରି ପଡ଼ି ପଡ଼ି ତାକୁ କେତେବେଳେ ନିଦ ହୋଇଯାଇଛି ।

ସକାଳ ହେଲା । ନିଦ ଭାଙ୍ଗିଲା ମାତ୍ରେ ଆଗ ଆଖି ପଡ଼ିଲା ଛବିଟି ଉପରେ । ତା' ମନଟା ଖୁସି ହୋଇଗଲା । କାମକୁ ଯିବା ପାଇଁ ପ୍ରସ୍ତୁତି ଆରମ୍ଭ ହେଲା । ରାନ୍ଧି ବାଢ଼ି ଖାଇ ସାରିଲେ ସିନା ଯିବ । ଖାଇବାକୁ ବାଢ଼ିବା ପୂର୍ବରୁ ତା'ର କ'ଣ ମନ ହେଲା କେଜାଣି ପ୍ରଥମେ ଗୋଟିଏ ଥାଳିରେ କିଛି ଭାତ ତରକାରି ବାଢ଼ି ନେଇ, ସେଇ ଛବିଟି ପାଖରେ ରଖି ଦେଇ ତାକୁ ନମସ୍କାରଟିଏ ହେଲା, ତା' ପରେ ନିଜେ ଖାଇସାରି କାମକୁ ଚାଲିଗଲା । ସେଇ ଦିନଠାରୁ ସେ ଖାଇବା ପୂର୍ବରୁ ଛବିଟି ପାଖରେ ଖାଇବା ଜିନିଷ କିଛି ଥୁଏ ଓ ତାକୁ ନମସ୍କାର କରେ । ଯେମିତି କଲାବେଳେ କାହିଁକି କେଜାଣି ତାକୁ ଭାରି ଖୁସି ଲାଗେ । ଯେତେ ଦୁଃଖରେ ଥିଲେ ବି ଛବିଟିକୁ ଥରେ ଚାହିଁଦେଲେ ତା'ର ସବୁ ଦୁଃଖ କୁଆଡ଼େ ଉଭେଇ ଯାଏ । ଏମିତି ଏମିତି ଛଅମାସ କଟିଗଲା ।

ଦିନେ ସେ କାମରୁ ଘରକୁ ଫେରୁଛି, ଭୋକରେ ପେଟ ଜଳୁଛି । ଯେମିତି ତାଟି ଖଣ୍ଡ ଫେଲି ଭିତରକୁ ପଶିଛି, ଖାଇବା ଜିନିଷର ବାସ୍ନାରେ ତା' ଭୋକ ଦି'ଗୁଣ ହୋଇଗଲା । ରୋଷେଇ ଘରକୁ ଯାଇ ଦେଖିଲା ଗରମ ଗରମ ଭାତ ତରକାରି ରନ୍ଧା ହୋଇ ଥୁଆ ହୋଇଛି । କିଏ ୟାକୁ ସବୁ ରାନ୍ଧିଛି ! ପ୍ରଥମେ ତାକୁ ସବୁ ଖାଇବାକୁ ଡର ମାଡ଼ିଲା । ଭୋକବେଳେ ଏମିତି ଖାଇବା କିଏ ଛାଡ଼େ ? ଥାଳିଟିରେ ଆଗ ଛବିଟି ପାଇଁ ବାଢ଼ି ଦେଇ ନିଜେ ମନବୋଧ କରି ଖାଇଲା । ଟିକେ ବିଶ୍ରାମ ନେଇସାରି ତାଟି କବାଟ ଆଉଯାଇ ଦେଇ କାଠ କାଟିବା ପାଇଁ ଜଙ୍ଗଲ ଆଡ଼କୁ ଚାଲିଗଲା । ସନ୍ଧ୍ୟାକୁ ଫେରି ପୁଣି ଦେଖିଲା ସେଇ ବ୍ୟବସ୍ଥା । କ'ଣ ଇଏ ଭୂତ କାରବାର ।

କିଏ ଏ କାମ କରୁଛି ଦେଖିବାକୁ ସକାଳୁ କାମକୁ ଯିବା ବାହାନାରେ ଘରୁ ବାହାରିଯାଇ ବାଡ଼ପଟେ ଲୁଚି ବସିଲା । କିଏ ତା' ଘରକୁ ପଶୁଛି ନିଶ୍ଚୟ ଦେଖିବ । କାହିଁ, କେହି ତ ଘରକୁ ପଶି ନାହାନ୍ତି, କିନ୍ତୁ କେହି ଜଣେ ଘର ଭିତରେ ଖୁଲ୍ ଖୁଲ୍ କରୁଥିବାର ଶବ୍ଦ ଶୁଭୁଛି ଯେ । ସେ ଫାଙ୍କ ବାଟେ ଗଳି କରି ଚାହିଁଲା । ଏ କ'ଣ ? ସୁନ୍ଦରୀ ସ୍ତ୍ରୀ ଲୋକଟିଏ ଚୁଲି ପାଖରେ ଠିଆ ହୋଇ ନିଆଁ ଲଗାଉଛି । କୋଉଠି ୟାକୁ ଦେଖିଲା ପରି ଲାଗୁଚି ତ । ହଠାତ୍ ଆଖି ପଡ଼ିଗଲା ତା' ଛବିଟି ଗୋଟି ଧଳା ସଫା କାଗଜ ହୋଇ ଝୁଲୁଚି କାନ୍ଥରେ । ସ୍ତ୍ରୀ ଲୋକଟି ସେ ଛବିରେ ନାହିଁ । ଆନନ୍ଦରେ ତା'ଦେହ ଥରିଗଲା । ସେ କ'ଣ କରିବ, ହଠାତ୍ ଠିକ୍ କରି ପାରିଲା ନାହିଁ । କବାଟ ମେଲା କରି ଘର ଭିତରକୁ ଝଟ୍ କରି ପଶିଗଲା । କିନ୍ତୁ—ଏ କ'ଣ ହେଲା ସ୍ତ୍ରୀ ଲୋକଟି କୁଆଡ଼େ ଉଭେଇ ଗଲା ! ଚୁଲି ଉପରେ ଭାତ ହାଣ୍ଡି ବସିଛି, ଭାତ ଫୁଟୁଛି, ଚୁଲି ଜଳୁଛି ହେଲେ ସେଇ ସୁନ୍ଦରୀ ସ୍ତ୍ରୀ ଲୋକଟି କୋଉଠି ହେଲେ ଦିଶୁନି । ଛବିକୁ ଫେରିପଡ଼ି ଚାହିଁଲା ଛବିରେ ସ୍ତ୍ରୀ ଲୋକଟି ସେମିତି ହସୁଛି ।

ଛବିରୁ ବାହାରିଥିଲା ବେଳେ କେମିତି ସେ ଝିଅଟିକୁ ଅଟକେଇ ରଖିବ ତା'ରି ଉପାୟ ଚିନ୍ତା କରି କରି ତା'ର ଦିନ କଟିଲା । ସନ୍ଧ୍ୟାରେ ସେ ପୁଣି ବାହାରକୁ ଯାଇ ଲୁଚି ବସିଲା ।

ଅଳ୍ପ ସମୟ ପରେ ଘର ଭିତର ପୁଣି କାମ ଦାମ ଆରମ୍ଭ ହୋଇଗଲା । ଘର ସଫା, ଚୂଲି ଲଗା, ରୋଷେଇବାସ । ଲୋକଟି ନିଜକୁ ସଜାଡ଼ି ନେଲା; ଏଇ ଠିକ୍ ବେଳା । ସ୍ତ୍ରୀଲୋକଟି କାର୍ଯ୍ୟବ୍ୟସ୍ତ ଥିଲାବେଳେ ସେ ତା ଦେଖିଲା କାମ କରିନେବ । ଚଟ୍ କରି ଘର ଭିତରକୁ ପଶିଯାଇ ଆଗ କରି କାନ୍ଥରେ ଲଟକା ହୋଇଥିବା ଛବିର ଧଳା କାଗଜ ଖଣ୍ଡିକୁ ଗୁଡ଼ାଇ ନେଇ ଗୋଟେ ଜାଗାରେ ଲୁଚାଇ ଦେଲା । ସ୍ତ୍ରୀ ଲୋକଟି ଆଉ ଯିବ କୁଆଡ଼େ ? ଚୂପ୍ ହୋଇ ସେଠି ଠିଆ ହୋଇ ରହିଲା ।

ଲୋକଟି ତା' ପାଖକୁ ଯାଇ ତା' ହାତଟି ଧରି ପକେଇ କହିଲା— "ମୁଁ ଜନ୍ମରୁ ଦୁଃଖୀ । ମତେ ଆଉ ତୁମେ ଛାଡ଼ି ଦେଇ ଚାଲି ଯାଅନା, ମୋ ପାଖରେ ରୁହ ।"

ଭାଗ୍ୟକୁ ଦେଖ—ଏଇ ପଦେ କଥାରେ ସେ ସ୍ତ୍ରୀ ଲୋକଟି ତା' ପାଖରେ ରହିବାକୁ ରାଜି ହୋଇଗଲା । ଲୋକଟି ହାତରେ କୋଠିନିଧି ମିଳିଗଲା ପରି ! ସ୍ୱାମୀ ସ୍ତ୍ରୀ ହୋଇ ସେମାନେ ସେଇଦିନଠାରୁ ସୁଖରେ ଘର କଲେ ।

ସ୍ତ୍ରୀଟି ସେ ଘରେ ରହିଲା ଦିନୁ ଲୋକଟିର ଭାଗ୍ୟ ବଦଳି ଗଲା । ଧନ ସମ୍ପତ୍ତି କାହିଁରେ କ'ଣ ମାଡ଼ିଗଲା । ସେମାନେ ସେଇଠି ଗୋଟେ ସୁନ୍ଦର ଘର ତିଆରି କରି ରହିଲେ । ଦେଖଣାହାରି କାବା ହୁଅନ୍ତି । ବର୍ଷକ ତଳେ ତାଟି ଅଜଣା ହୋଇ କୁଡ଼ିଆ ଖଣ୍ଡେ ଥିଲା ଏଠି । ଏତେ ସୁନ୍ଦର ଘର ହେଲା କେମିତି ? କଲା କିଏ ? ଠାକୁରଙ୍କ ଦୟା ନ ହେଲେ ଏତେ ସୁଖ ସମ୍ଭବ ନୁହେଁ । ସ୍ୱାମୀ ସ୍ତ୍ରୀ ଦୁହେଁ ଭାରି ଭଲରେ ଥା'ନ୍ତି ।

ଦିନେ ଦିନେ ସ୍ୱାମୀଟି ସ୍ତ୍ରୀକୁ ପଚାରେ, "ସତ କୁହ, ତୁମେ କିଏ ? ଏଠିକି କେମିତି ଆସିଲ ?" ସ୍ତ୍ରୀଟି ସବୁଦିନେ ହସିଦେଇ, କଥା ବାଁରେଇ ଦେଇ ସେଠୁ ଉଠି ଚାଲିଯାଏ । ଦିନେ ତା' ସ୍ୱାମୀ ଜିଦ୍ କଲାରୁ କହିଲା— "କାହିଁକି ଏତେ ସେଇ କଥା ପଚାରୁଛ ? ମୁଁ କ'ଣ ଗୋଟିଏ ପକ୍ଷୀ ! ଅଭିଶାପ ପାଇ କେତେ ବର୍ଷ ପାଇଁ ଆସିଚି, ପୁଣି ପଳେଇବ ? ମୋ ଲାଗି ଏତେ ଚିନ୍ତା ତୁମର କାହିଁକି ? ଆମେ ସେ ଏକାଠି ସୁଖରେ ଅଛେ, ଏଇ କ'ଣ ମୋର ପରିଚୟ ନୁହେଁ ?" ସ୍ୱାମୀର ମନ ଖରାପ ହୋଇଗଲା ।

"ହେଲେ କ'ଣ ଏଇ ପକ୍ଷୀ ? ମଲେ ଗୁଡ଼ା ପୁଣି ଗ୍ଭଲିଯିବ ? କେତେବର୍ଷ ସ୍ଥାର ରହଣି ପୃଥିବୀରେ ?" କେତେଦିନ ସୁଦ୍ଧୁଖୁଦ୍ଧୁରେ କଟି ଗଲାରୁ ସେ କଥା ତା' ମନରୁ ପାଶୋର ଗଲା ।

ଏ ଭିତରେ ତିନବର୍ଷ କଟିଗଲାଣି । ତାଙ୍କର ଝିଅଟିଏ ହେଲା । ମା' ଭଳି ଦେଖିବାକୁ ଭାରି ସୁନ୍ଦର । ତାକୁ ପାଇ ବାପା ମା ଦୁହିଁଙ୍କର ଆନନ୍ଦ କାହିଁରେ କ'ଣ !

ହଠାତ୍ ଦିନେ ସ୍ତ୍ରୀଟିର ମନ କ'ଣ ହେଲା କେଜାଣି ସେ ଅସ୍ଥିର ଭାବରେ ଘର ସାରା ବୁଲିବାକୁ ଲାଗିଲା । କଥା କ'ଣ ! ଏମିତି କାହିଁକି ହଉଚ ? ସ୍ୱାମୀଟି ତା' ମନ ବୁଝେଇବା ପାଇଁ ଯେତେ ଚେଷ୍ଟା କଲା, କିଛି ଲାଭ ହେଲାନି । ଧୀରେ ଧୀରେ ସେ ଖିଆ ପିଆ ମଧ୍ୟ ଛାଡ଼ିଦେବା ଦେଖି, ତା' ଦେହ ଖରାପ ହେଉଛି ଭାବି ତାକୁ ଡାକ୍ତରଙ୍କ ପାଖକୁ ଯିବାକୁ ବାଧ୍ୟ କଲା । ଡାକ୍ତର ପାଖକୁ ଯିବାକୁ ସେ ରାଜି ହେଲାନି । କେବଳ ପୁରୁଣା ଦିନର କଥା ମନେ ପକେଇ, ସେଇ ଧଳା କାଗଜ ଖଣ୍ଡିକ ଯେଉଁଥିରେ ଦିନେ ଝିଅର ଛବିଟିଏ ଥିଲା, ତାକୁ ଦେଖିବାକୁ ମାଗିଲା । ଗଲାଦିନର କଥା ମନେ ପକେଇ ସ୍ତ୍ରୀଟି ବ୍ୟସ୍ତ ହେଉଚ ଭାବି ଧଳା କାଗଜ-ଖଣ୍ଡିକ ଲୁଚେଇଥିବା ଜାଗାରୁ ଆଣି ଯେମିତି ତା' ଆଗରେ ଖୋଲି ଦେଇଚି, ଅଦ୍ଭୁତ କଥାଟିଏ ଆଖି ପିଛୁଳାକେ ଘଟିଗଲା । ସ୍ତ୍ରୀଟି ତା' ଜାଗାରୁ ଉଭେଇଗଲା ଓ ଧଳା କାଗଜ ଦେହରେ ଛବିଟିଏ ପୁଣି ହସି ଉଠିଲା । ଛବି ଭିତରୁ ଫେରି ଆସିବା ଲାଗି ଅନୁରୋଧ କରି ସ୍ୱାମୀଟି ବିକଳ ହୋଇ କେତେ କାନ୍ଦିଲା । କିନ୍ତୁ ନାଃ, ଆଉ ନାହିଁ । ଛବିଟି ପୂର୍ବପରି ସ୍ଥିର । ଆଉ ହଲ୍ ନାହିଁ କି ଚଲ୍ ନାହିଁ । ମନେ ପଡ଼ିଲା ତା'ର—ଦିନେ ସେ କହିଥିଲା, "ସେ ସ୍ୱର୍ଗର ପରୀଟିଏ, ଅଭିଶାପ ପାଇ ମର୍ତ୍ତ୍ୟକୁ ଆସିଛି ।" ସେଦିନ ସେ ଥଟ୍ଟା ମଣିଥିଲା । ଆଜି ସେ କଥା ସତ ହୋଇଗଲା । ଅଭିଶାପର ଦିନ ପୂରିଗଲା । ସେ ପୁଣି ସ୍ୱର୍ଗକୁ ଫେରିଗଲା । ଆଉ ମୁଣ୍ଡ ବାଡ଼େଇଲେ କ'ଣ ଫେରିବ ? ଛବିଟିକୁ ଠାକୁରଙ୍କ ପରି ପୂଜା କରି ଝିଅଟି ମୁହଁକୁ ଚାହିଁ ତା'ର ବାକିତକ ଜୀବନ କଟେଇଲା ।

# ଇନ୍ଦ୍ରଧନୁ

ନପଟ ମଫସଲ ଗାଁଟିଏ । ସହରଠାରୁ ଅନେକ ଦୂର । ସ୍କୁଲ କଲେଜ ତ ଦୂରର କଥା, ଚାଟଶାଳୀଟିଏ ସୁଦ୍ଧା ନାହିଁ । ସମସ୍ତେ ଗରିବ ଚାଷୀ । ଗାଁଟା ସାରାର ପିଲାଏ ଖେଳି ବୁଲି ଦିନ କାଟନ୍ତି, ଟିକେ ବଡ଼ ହୋଇଗଲେ କ୍ଷେତରେ କାମ କରନ୍ତି ।

ସେଇ ଗାଁରେ ଲିଆଙ୍ଗ୍ ଓ ଚ୍ ଦୁଇଟି ପରିବାର ଧନୀ ଭିତରେ ଗଣା । ମଝିରେ ମଝିରେ ସେଇ ପରିବାରର ଲୋକେ ସହରକୁ ବୁଲି ଆସନ୍ତି । ପାଠୁଆ ସହରିଆ ଲୋକଙ୍କୁ ତାଙ୍କର ଭାରି ମର୍ଯ୍ୟାଦା । ସହରରୁ ଫେରି ସେଠି ଦେଖିଥିବା କଥା କହି ଗପନ୍ତି—"ଆମର ଧନ ଥିଲେ କି ହବ, ପାଠ ଦି ଅକ୍ଷର ନ ପଢ଼ିଥିଲେ କି ମଣିଷ ? ଆମ ଦିନକାଳ ତ ଗଲା, ପିଲାଙ୍କୁ ପାଠ ପଢ଼େଇଲେ ସଂସାର କ'ଣ ହେଲେ ଜାଣନ୍ତେ । ଲୋକରେ ଗଣା ହୁଅନ୍ତେ ।" ଏ ବିଷୟର ସେମାନେ ବରାବର କରନ୍ତି ।

ଲିଆଙ୍ଗ୍ ପରିବାରର ପୁଅଟିଏ ହେସିନ୍—ପୋ । ବାପରତ ମନ ଲାଗିଛି, ପିଲାଟି ଟିକେ ବଡ଼ ହୋଇଗଲା ମାତ୍ରେ ତାକୁ ନେଇ ସହରର ଗୋଟେ ଭଲ ସ୍କୁଲରେ ଛାଡ଼ିଦେଇ ଆସିଲା । ତା'ର କେତେ ଦିନର ଆଶା । ଯାହା ପଇସା ଖର୍ଚ୍ଚ ହଉ ସେଥିକି ପରୁଆ ନାହିଁ । ପୁଅ ପାଠ ପଢ଼ି ମଣିଷରେ ଗଣା ହବ । ପୁଅ ବି ବେଶ୍ ଚାଲାକ ଚତୁର ପିଲା । ମଫସଲରୁ ଆସିଲେ କ'ଣ ହେଲା । ଅଳ୍ପ ଦିନ ଭିତରେ ସହର ଚାଲି-ଚଳନ ସହିତ ନିଜକୁ ବେଶ୍ ଖାପ୍ ଖୁଆଇ ନେଲା ।

ଚୁ ପରିବାରରେ ମଧ୍ୟ ସେଇ ବୟସର ଝିଅଟିଏ ଇଂତାଇ । ଝିଅ ପିଲା । ପୁଣି ସେତେବେଳର ମଫସଲ । କେବେ ଦିନେ ଦାଣ୍ଡ ଦେଖିନି, ଏଡ଼େ ସୁନ୍ଦରୀ ଯେ ବାପା ମା ଗୋଡ଼େ ଗୋଡ଼େ ତାକୁ ଜଗିଥାନ୍ତି । ପାଠ ପଢ଼ାରେ ତା'ର ଭାରି ସଉକ୍ ଟିକେ ବଡ଼ ହୋଇଗଲାରୁ ବାପ ମାଙ୍କ ଜିଦ ଲଗେଇଲା । 'ସହରକୁ ଯିବ ପାଠ ପଢ଼ିବ" । ବାପ ମା ବହୁତ ବୁଝେଇଲେ—"ଝିଅମାନେ ପଦାରେ ବାପ ମାଙ୍କୁ ଛାଡ଼ି ରହନ୍ତି ନାହିଁ ।

ତାଛଡ଼ା ସହର ଭାରି ଖରାପ ଜାଗା । ସେଠା ସ୍କୁଲରେ ଖାଲି ପୁଅ ପିଲା ପଢ଼ନ୍ତି, ଝିଅଟା ସେଠି ଯାଇ ଏକା ରହିବ କେମିତି ସେ ପାଠ ପଢ଼ିବ !"

ଇଂଚାଇ ଠିକ୍ ଜାଣେ ତାକୁ ପାଠ ପଢ଼ାଇବାକୁ ବାପଙ୍କର ଭାରି ମନ । ଖାଲି ସେ ଝିଅ ବୋଲି ସହରକୁ ଛାଡ଼ିବାକୁ ରାଜି ହେଉ ନାହାନ୍ତି । ବାପାଙ୍କୁ କଥା ଦେଲା—"ମତେ ପୁଅଙ୍କ ପୋଷାକ କିଣିଆଣି ଦିଅ । କେହି ଜାଣିବେ ନାହିଁ ମୁଁ ଝିଅ ବୋଲି ସ୍କୁଲ ପାଠ ଶେଷକରି ମୁଁ ଠିକ୍ ଫେରି ଆସିବି । କିଛି ଅସୁବିଧା ହବନି ।"

ଝିଅର ଜିଦ୍ ଦେଖି ବାପା ରାଜି ହୋଇଗଲେ ଓ କହିବା ମୁତାବକ ସବୁକଥା ଠିକଣା ହେଲା । ସେ ପୁଅଟିଏ ହୋଇ ସହରରେ ହେସିନ୍-ପୋ ପଢ଼ୁଥିବା ସ୍କୁଲରେ ନାଁ ଲେଖାଇ ସେଠି ରହିଲା ।

ହେସିନ୍-ପୋ ଓ ଇଂଚାଇ ଭାରି ସାଙ୍ଗ ହୋଇଗଲେ । ପାଠରେ ଦୁହିଁଙ୍କର ଭାରି ମନ । ଇଂଚାଇର ବେଶୀ କେହି ସାଙ୍ଗ ନ ଥା'ନ୍ତି । ସେ ସବୁବେଳେ ନିଜକୁ କାର୍ଯ୍ୟବ୍ୟସ୍ତ ରଖି ଅନ୍ୟ ପିଲାଙ୍କ ଠାରୁ ଦୂରରେ ରହେ । ଭଲ ପାଠପଢ଼େ ବୋଲି ସାଧାରଣ ପିଲାଏ ତାକୁ ମର୍ଯ୍ୟାଦା କରନ୍ତି ଓ ତା ଠାରୁ ଦୂରେଇ ରୁହନ୍ତି ।

ହଷ୍ଟେଲରେ ଇଂଚାଇ ଓ ହେସିନ୍-ପୋ ଗୋଟିଏ ଘରେ ରୁହନ୍ତି । ଗୋଟିଏ ଖଟରେ ଶୁଅନ୍ତି । ଇଂଚାଇ ପ୍ରଥମଦିନୁ ଗୋଟିଏ ଜବାବ୍ କରାଇ ନେଇଥାଏ ଯେ ଦୁହେଁ ଖଟର ଦୁଇକଡ଼େ ଶୋଇବେ ଓ ଖଟ ମଝିରେ ଗୋଟିଏ ପାତ୍ରରେ କିଛି ପାଣି ରହିବ । ଯେ ଶୋଇଲାବେଳେ ସେ ପାତ୍ରକୁ ପ୍ରଥମେ ଛୁଇଁବ ବା ସ୍ଥାନାନ୍ତରିତ କରିବ ତାକୁ ଦଣ୍ଡ ଭୋଗିବାକୁ ହବ । ଚିରଦିନ ଲାଗି ତାଙ୍କ ସାଙ୍ଗ ଛୁଟିବ । ହେସିନ୍-ପୋ ତ ଇଂଚାଇକୁ ଭାରି ଭଲପାଏ । ଏଇ ସାଧାରଣ କଥାରୁ କାଳେ ବନ୍ଧୁ ଭାଙ୍ଗିଯିବ ବୋଲି ସେ ଭାରି ସାବଧାନ ।

ଲୁଗାପଟା ବଦଳେଇବା ବେଳେ ଇଂଚାଇ ଖୁବ୍ ସାବଧାନ ଥାଏ । କେବେ ସେତ ଖାଲିଦେହ ହେବା କେହି ଦେଖିନି, ସାଙ୍ଗମାନେ ତାକୁ ଏହାର କାରଣ ପଚାରିଲେ ସେ ବଡ଼ବଡ଼ ଉତ୍ତରଦିଏ, "ଚଷାମାନେ ଖାଲିଦେହ ହୁଅନ୍ତି, କାହିଁକି ନା ତାଙ୍କର ପୋଷାକ ନାହିଁ, କେବେ ଭଦ୍ରଘରର ପିଲାକୁ ଖାଲିଦେହ ହବା ଦେଖିଛ ?" ସାଙ୍ଗ ପିଲାଙ୍କ ମନକୁ

କଥାଟା ବେଶ୍ ପାଇଲା । ଏମିତି ଅବସ୍ଥା ହେଲା ଯେ ସେ ସ୍କୁଲର କୌଣସି ପିଲା ଭଦ୍ରତା ଖାତିରରେ ଖାଲିହାତ ହେବାକୁ ଲଜ୍ଜାବୋଧ କଲେ । କାହାର ଆଉ ସନ୍ଦେହ କରିବାର ବାଟ ରହିଲାନି ଯେ ଇଂଚାଇ ଝିଅ ।

ସ୍କୁଲର ସବା ଉପର କ୍ଲାସ୍‌ରେ ପଢ଼ୁଥିଲାବେଳେ ଗାଁରୁ ଖବର ଆସିଲା ଯେ ଇଂଚାଇର ବାପା ମରିଗଲେ । ଇଂଚାଇ ତା ଭାଉଜକୁ ଭଲ କରି ଜାଣେ—ସେ ଏଇଲେ ଘରର ମାଲିକାଣୀ—ଥରେ ଘରକୁ ଗଲେ ଆଉ ସ୍କୁଲକୁ ଆସିବା କଥା ମିଛ । ଶେଷ ପରୀକ୍ଷା ଅଳ୍ପଦିନ ଥାଏ । ତେଣୁ ଏତେ ଦୁଃଖରେ ମଧ୍ୟ ସେ ଗାଁକୁ ନ ଯାଇ ସ୍କୁଲରେ ରହିଲେ । ଏକାଥରକେ ପରୀକ୍ଷା ସରିଲେ ଯିବ । ବାପା ଆଉ ଫେରିବେନି ସେ ଜାଣେ । ଏତେଦିନ ପରିଶ୍ରମ କରି ପଢ଼ିଲା, ପରୀକ୍ଷାଟା ନ ଦେଲେ ସାରା ଜୀବନଲାଗି ଅବଶୋଷ ରହିଯିବ ।

ହେସିନ୍-ପୋକୁ ତ ଏତେ କଥା ଜଣା ନାହିଁ ତାକୁ ବହୁତ ବୁଝେଇଲା । ବାପାଙ୍କ ଶୁଦ୍ଧଘର ସାରି ଫେରି ଆସିଲେ ପରୀକ୍ଷା ଦବାରେ କିଛି ଅସୁବିଧା ହବ ନାହିଁ ବୋଲି କହି ତାକୁ ଗାଁକୁ ଯିବାକୁ ବାଧ୍ୟ କରୁଥାଏ । ଇଂଚାଇର ସେଇ ଏକା ଜିଦ୍ଦ । ବାପା ତ ନ ଥିବେ ସେ ଯାଇ କ’ଣ କରିବ ?

ଭାଉଜ ତା’ର ସହଜ ଲୋକ ନୁହଁନ୍ତି । ଇଂଚାଇ ନ ଫେରିବାର ଦେଖି ସେ ତାକୁ ହଇରାଣ କରିବାକୁ ଉପାୟ ଚିନ୍ତା କଲେ । ପ୍ରତିଦିନ ଗାଁରୁ କେହି ନା କେହି ତା’ ପାଖକୁ ଆସନ୍ତି ଭାଉଜଙ୍କଠୁ ଖବର ନେଇ । ସାଙ୍ଗରେ ଆଣିଥା’ନ୍ତି ଝିଅଙ୍କ ଖେଳନା କଣ୍ଢେଇ । ସାଙ୍ଗମାନେ ଆଶ୍ଚର୍ଯ୍ୟ ହୁଅନ୍ତି । “ଏ ସବୁ କି ଜିନିଷ ! ଗୋଟେ ଏଡ଼େବଡ଼ ପୁଅପିଲାର ଏଗୁଡ଼ାକ କଅଣ କାମରେ ଲାଗିବ ?” ଇଂଚାଇ ଭାଉଜଙ୍କ କଦର୍ଯ୍ୟ ଅଭିପ୍ରାୟ ଠିକ୍ ଜାଣିପାରେ । ଉଃ ! ତାକୁ ଅପମାନ ଦବାପାଇଁ କେତେ ଷଡ଼ଯନ୍ତ୍ର ! ମନ ଭିତରେ ରାଗ ଓ ଭୟରେ ଥରୁଥିଲେ ବି ସାଙ୍ଗଙ୍କୁ ଉତ୍ତର ଦିଏ ସହଜ ସ୍ୱରରେ—“ମୋ ପିଲାଦିନର ଖେଳଣା ସବୁ । ବାପା ଅତି ଆଦରରେ ସଜାଡ଼ି ରଖିଥିଲେ । ବାପାଙ୍କ ଅନ୍ତେ କିଏ ରଖିବ ? ମୋ ଜିନିଷ ତ ଭାଉଜ ମୋ ପାଖକୁ ପଠାଇ ଦେଉଛନ୍ତି ।”

ଏ ଅପମାନକୁ ସହଜରେ ହଜମ କରି ଦେଉଚି ଦେଖି ଭାଉଜ ଶେଷ ଅସ୍ତ୍ର ଛାଡ଼ିଲେ । ଘରୁ ଟଙ୍କା ଆସିବା ବନ୍ଦ ହୋଇଗଲା । ଆଉ ତ

ଉପାୟ ନାହିଁ । ବାଧ୍ୟ ହୋଇ ଇଂଚାଇକୁ ପରୀକ୍ଷା ପୂର୍ବରୁ ସ୍କୁଲ ଛାଡ଼ିବାକୁ ହେଲା ।

ସାଙ୍ଗମାନଙ୍କଠାରୁ ବିଦାୟ ନେଇ ସେ ଘରକୁ ଫେରି ଆସିଲା ମନ ଦୁଃଖରେ । ଘରେ ପହଞ୍ଚି ତା ଦୁଃଖ ଆହୁରି ବଢ଼ିଗଲା । ଖାଲି ଘର, ବାପା ତ ନାହାନ୍ତି । ପୁଣି ଭାଉଜ ତା'ର ବାହାଘର ଠିକଣା କରି ସାରିଛନ୍ତି । କାହାକୁ ତା ମନକଥା କହିବ—"ସେ ଯେ ହେସିନ୍-ପୋକୁ ଭଲପାଏ, ତା ଛଡ଼ା ଅନ୍ୟ କାହାକୁ ବାହାହେବା ତ ତା ପକ୍ଷରେ ସମ୍ଭବ ନୁହେଁ ! ଯଦିଓ ହେସିନ୍-ପୋ ଏ ବିଷୟରେ କିଛି ଜାଣିନାହିଁ ତଥାପି ଇଂଚାଇ କେବଳ ତାକୁଇ ବାହା ହେବାକୁ ଚାହେଁ ।" ଶେଷରେ ସେ ବାଧ୍ୟ ହୋଇ ଭାଉଜଙ୍କୁ ତା ମନକଥା କହିଲା ।

କିନ୍ତୁ ଭାଉଜଙ୍କର ସେଇ ଏକା ଜିଦ । ସେ ଏକଥା କରେଇ ଦେବେନି । ସେ ଠିକଣା କରିଥିବା ଜାଗାରେ ଇଂଚାଇକୁ ବାହା ହବାକୁ ପଡ଼ିବ । ଶ୍ୱଶୁର ମରିଗଲା ପରେ ତାଙ୍କ ଘର ଅବସ୍ଥା କୁଆଡ଼େ ଭାରି ଖରାପ ହୋଇ ଯାଇଛି, ଠିକଣା ହୋଇଥିବା ବର ଅନେକ ଟଙ୍କା, ସୁନା, ଦବାକୁ ଜବାବ୍ କରିଛି । ଏ ସୁଯୋଗ ସେ ଆଦୌ ଛାଡ଼ିବେନି ।

ଇଂଚାଇ ଯେତିକି ମନା କଲା ବାହାଘର ପ୍ରସ୍ତୁତି ସେତିକି ଶୀଘ୍ର ହବାକୁ ଲାଗିଲା । ଭାଉଜଙ୍କର ପ୍ରଧାନ ଲକ୍ଷ୍ୟ ହେସିନ୍-ପୋ ପରୀକ୍ଷା ଦେଇ ସହରରୁ ଆସିବା ପୂର୍ବରୁ ଏଠିକା କାମ ଶେଷ ହବା ଦରକାର । କାଳେ କିଛି ଗୋଳମାଳ ହୋଇପାରେ ।

ଏଣେ ସ୍କୁଲରେ ହେସିନ୍-ପୋକୁ ଆଜି କିଛି ଭଲ ଲାଗୁ ନ ଥାଏ । ଏତେ ଦିନ ଏକାଠି କଟେଇଲା ପରେ ଇଂଚାଇକୁ ଛାଡ଼ି ରହିବା ତା ପକ୍ଷରେ କଷ୍ଟକର ହୋଇ ପଡ଼ିଲା । ତାକୁ ଥରେ ଦେଖିଦେଇ ଯିବା ଲାଗି ସେ ଗାଁକୁ ଆସିଲା ।

ଇଂଚାଇ ଘର ଦାଣ୍ଡରେ ପହଞ୍ଚି ନିଜର ପରିଚୟ ଦେଇ ତାକୁ ଡାକି ଦବାକୁ ସେ ଘରର ଜଣକୁ କହିଲା । ଲୋକଟିର ଉତ୍ତର ଶୁଣି ସେ କାବା—"ଇଂଚାଇ ପରା ଝିଅଟିଏ । ତା'ର ପୁଣି ବାହାଘର ଠିକଣା ହୋଇ ସାରିଛି, ଜଣେ ପୁରୁଷ ଲୋକ ସହିତ ସେ ଦେଖା କରିବ କେମିତି ?

ହେସିନ୍-ପୋ ଆଖିରୁ ହଠାତ୍ ଅନ୍ଧାର ଅପସରି ଗଲା । ପୁରୁଣା ଦିନର କେତେ କଥା ତା'ର ମନେ ପଡ଼ିଗଲା । ସ୍କୁଲ ଛାଡ଼ି ଆସିଲା ଦିନ ଇଂଚାଇ କେତେ କାନ୍ଦୁଥାଏ । ହେସିନ୍-ପୋ ତାକୁ ଅଧବାଟ ପର୍ଯ୍ୟନ୍ତ ଛାଡ଼ିବାକୁ ଆସିଥିଲା । ବାଟରେ ଇଂଚାଇ ଗୋଟିଏ ଗୀତ ଗାଇଥିବା ତା'ର ମନେ ପଡ଼ିଲା । ଗୀତ ଭାଷା ତା'ର ମନେ ନାହିଁ, ହେଲେ ଭାବ ପରିଷ୍କାର ମନେଅଛି । "ମୁଁ ନିଶ୍ଚୟ ଝିଅଟିଏ, ମୋ ନିଜ ଉପରେ ମୋର ଅଧିକାର ନାହିଁ କିନ୍ତୁ ମୁଁ ସାରା ଜୀବନ ତୁମର ହୋଇ ରହିବାକୁ ଚାହେଁ । ପୁରୁଷ ପରି ତୁମେ ମତେ ଗ୍ରହଣ କର ।"

ସେ ଦିନ ହେସିନ୍-ପୋ ତାର ମାନେ ବୁଝି ପାରି ନ ଥିଲା । ଆଜି ବୁଝିଲା ବେଳକୁ ନେଡ଼ିଗୁଡ଼ କହୁଣୀକୁ ବୋହିଗଲାଣି । "ଆଃ ଇଂଚାଇ ମତେ କାହିଁକି ଏ କଥା ମୁହଁ ଖୋଲି ନ କହିଲୁ ? ଏଇଲେ ମୁଁ ଆଉ କ'ଣ କରିବି ? ତତେ ଛାଡ଼ି ମୁଁ ବା ବଞ୍ଚିବି କେମିତି ?" ଘରକୁ ଫେରି ଇଂଚାଇର ବସ୍ତ୍ରପତ୍ର ସବୁ ସେ ପାଗଳ ପରି ଘାଣ୍ଟି ପକେଇଲା । କାଳେ ତା' ଭିତରୁ କିଛି ମିଳିଯିବ । ସତକୁ ସତ ପାଇଲା ମଧ୍ୟ । ଗୁଡ଼ାଏ ଚିଠି । ସବୁ ଗୁଡ଼ିକ ସେ ହେସିନ୍-ପୋକୁ ଲେଖିଛି । ହେଲେ ଖଣ୍ଡେ ମଧ୍ୟ ତାକୁ ଦେଇନ ।

ଖିଆପିଆ ଛାଡ଼ିଦେଇ ଇଂଚାଇ ଚିନ୍ତାରେ ହେସିନ୍-ପୋ ପାଗଳ ପରି ହୋଇଗଲା । ଇଂଚାଇ ହିଁ ଶୟନେ ସ୍ୱପନେ ତା'ର ଭଜନମାଳା ହୋଇଗଲା । ଏମିତି ହୋଇ ଦିନେ ସେ ରୋଗରେ ପଡ଼ି ପଡ଼ି ଏ ସଂସାରରୁ ବିଦାୟ ନେଇଗଲା ।

ଇଂଚାଇ ସବୁ ଖବର ପାଇଲେ ମଧ୍ୟ ନିରୁପାୟ । ସେ ଠିକ୍ ଜାଣିଥାଏ ତାର ଲାଗି ହେସିନ୍-ପୋର ଏ ଦୁରବସ୍ଥା ହେଲା । ଏ ସଂସାରରେ ବଞ୍ଚି ରହିବାକୁ ତାକୁ ବିଷପିତା ଲାଗିଲା । ହେଲେ ଉପାୟ ନାହିଁ । ଭାଉଜ ତାକୁ ଗୋଡ଼େ ଗୋଡ଼େ ଜଗିଥାଏ ।

ଦ୍ୱାର ଭିତରେ ବାହାଘର ଦିନ ଆସିଗଲାଣି । ବାଜା ରୋଷଣୀରେ ଦାଣ୍ଡ ଗହ ଗହ କମ୍ପୁଛି । ଇଂଚାଇ ପରି ସୁନ୍ଦରୀ ଝିଅ ଭାଗ୍ୟରେ ଥିଲେ ମିଳେ । ମହା ଆଡ଼ମ୍ବରରେ ବର ପହଞ୍ଚିଲା । ଛେଳକ ପାଣିକ ନେଲା

ପରି ଘୋଷରୁ ହୋଇ ଇଂଚାଇ ବେଗାକ ଗଲା । ବାହା ବାସି ବର କନ୍ୟା ଛନ୍ଦା ହେଲେ । ଆଗେ ଆଗେ ବର, ପଛ ସବାରୀରେ କନ୍ୟା ଯାଉଥାଏ ।

ରାସ୍ତା କଡ଼ରେ ହେସିନ୍-ପୋର କବର । ଇଂଚାଇ ସବାରୀ କାନ୍ଧେଇଥିବା ଲୋକଙ୍କୁ ସେହି କବର ପାଖରେ ଟିକେ ଅଟକିବାକୁ ଅନୁରୋଧ କଲା, ସୁନ୍ଦର ମୁହଁର ଅନୁରୋଧ କେବେହେଲେ ଏଡ଼ାଇବା ସହଜ ନୁହେଁ । ସବାରୀ ରହିଲା । ଇଂଚାଇ ଓହ୍ଲାଇପଡ଼ି କବର ପାଖରେ ମୁଣ୍ଡ ବାଡ଼େଇ କାନ୍ଦିବାକୁ ଲାଗିଲା । ଆଉ ସେ ସେଠୁ ନ ଆସେ । ସବାରୀ କାନ୍ଧେଇଥିବା ଲୋକ ହଇରାଣରେ ପଡ଼ିଲେ । ବହୁତ ବୁଝେଇଲେ । ଶେଷରେ ମାଲିକଙ୍କ ଉପରେ ଜୋର ଜବରଦସ୍ତି ମଧ୍ୟ କଲେ ।

ହଠାତ୍ ଏକ ଅଦ୍ଭୁତ ଘଟଣା ଦେଖି ସମସ୍ତେ କାବା । ଇଂଚାଇ କାନ୍ଦି କାନ୍ଦି କହୁଥିଲା—"ହେସିନ୍-ପୋ ଯଦି ସତରେ ମତେ ଭଲ ପାଉଥାଅ, ମତେ ତୁମ ପାଖକୁ ନେଇଯାଅ—" ଏ କଥା ତା' ପାଟିରୁ ନ ସରୁଣୁ କବର ସ୍ଥାନର ମାଟି ଅଦ୍ଭୁତ ଶବ୍ଦ କରି ଦୁଇ ଭାଗ ହୋଇଗଲା ଓ ଲୋକେ ହାଁ ହାଁ କରୁ କରୁ ଇଂଚାଇ ତା' ଭିତରକୁ ଡେଇଁ ପଡ଼ିଲା ଓ ମାଟି ପୁଣି ସମତୁଲ ହୋଇଗଲା ।

ସବାରୀ କାନ୍ଧେଇ ଥିବା ଲୋକେ ବିକଳ ହୋଇ ମାଲିକଙ୍କୁ ଖବର ଦବାକୁ ଦୌଡ଼ିଲେ । ଖବର ପାଇ ବର ପାଲିଙ୍କି ଆଗକୁ ଯିବା ବନ୍ଦ କରି ପଛକୁ ଫେରିଲେ । ହଜାର ହଜାର ଲୋକ ଘଟଣା କ'ଣ ଜାଣିବାକୁ ସେଠି ଆସି ଜମା ହୋଇଗଲେ ।

କବର ଖୋଳା ହେଲା । ସେଠି କିଛି ନାହିଁ । କଫିନ୍ ଭିତରେ ଖାଲି ଦି'ଖଣ୍ଡ ଧଳା ପଥର । ରାଗରେ ବରଙ୍କ ମୁଣ୍ଡ ଖରାପ ହୋଇଗଲା । ପଥର ଦି' ଖଣ୍ଡକୁ ଧରି ଜୋରରେ ଫୋପାଡ଼ିଦେଲେ ରାସ୍ତା ଉପରକୁ । ପଥର ଦିଖଣ୍ଡ ଯୋଉଠି ପଡ଼ିଲା ସେଠି ଆହୁରି ଅଜବ କଥା ଘଟିଲା । ସାଙ୍ଗେ ସାଙ୍ଗେ ଗୋଟିଏ ଦିକେନଆଁ ବାଉଁଶ ଗଛ ସେଠି ଠିଆ ହେଲା ଓ ପବନରେ ଦୋହଲିବାକୁ ଲାଗିଲା । ବରଙ୍କ ଆଦେଶରେ ଲୋକ ଲଗେଇ ସେ ଗଛ ହଣା ଚାଲିଲା । ଗୋଟିଏ ଶାଖା ହଣା ହେଲେ ଆଉ ଶାଖାଟି ଦୁ ଦୁ କରି

ବଢ଼ି ଚାଲିଥାଏ । ଦେଖଣାହାରୀ ପ୍ରମାଦ ଗଣିଲେ । ଏ କି ମେଜିକ୍ ? ଏକାବେଳକେ ଦୁଇଦଳ ଲୋକ ଦୁଇଟି ଶାଖାକୁ ଯେମିତି ଟାଣିଛନ୍ତି, ସମସ୍ତେ ଚାହିଁଛନ୍ତି ଗଛ ଦୁଇଟି ଆକାଶକୁ ଉଡ଼ିଯାଇ ଆଖି ପିଛୁଳାକେ କୁଆଡ଼େ ଅଦୃଶ୍ୟ ହୋଇଗଲେ ।

ଦୁହେଁ ଏକାଠି ସଂସାର କରିବେ ବୋଲି କେତେ ମନ କରିଥିଲେ, ମଣିଷ ସିନା ତାଙ୍କୁ ଏକାଠି କରି ଦେଲାନି ହେଲେ ସ୍ୱର୍ଗରେ ସେମାନେ ଏକାଠି ହେଲେ । ଦୁହେଁ ମିଶି ଆକାଶରେ ଇନ୍ଦ୍ରଧନୁ ପାଲଟି ଗଲେ ।

ନାଲି ରଙ୍ଗଟି ହେସିନ୍-ଚୋ ଓ ନୀଳଟି ଇଂତାଇ । ଯେତେବେଳେ ଆକାଶରେ ମେଘ ଘୁଡ଼ିଯାଏ ଓ ବିପରୀତ ଦିଗରୁ ସୂର୍ଯ୍ୟ କିରଣ ଆସି ମେଘ ଉପରେ ପଡ଼େ ଦୁହେଁ ସାଙ୍ଗ ହୋଇ ତା'ର ଭିତରୁ ମୁହଁ ଦେଖାନ୍ତି । ସେମାନେ ଏକାଠି କେଡ଼େ ସୁଖରେ ଅଛନ୍ତି ଦେଖେଇ ଦବାକୁ ଆକାଶରୁ ପୃଥିବୀ ଲୋକଙ୍କୁ ଚାହିଁ ହସୁଥାନ୍ତି ।

***

# ବିଷରୁ ଅମୃତ

କାଓ-ଫୁ ଗାଁର ମାଓ, ବ୍ୟବସାୟ କରି ଅଳ୍ପଦିନ ଭିତରେ ବେଶ୍ ପଇସା ରୋଜଗାର କରି ଧନୀ ହୋଇଥାଏ, ଟୋକାଟାଏ, ବାହା ସାହା ତ ହୋଇନି, ଏଣେ ବାପ ମା' କେହି ନାହାନ୍ତି, ଚିନ୍ତା କଅଣ ? ପଇସା ରୋଜଗାର ତା'ର ଏକମାତ୍ର ଧନ୍ଦା । କିଛି ଟଙ୍କା ଧରି ଦୂର ଜାଗାକୁ ଚାଲିଯାଇ ଏଠି ନ ମିଳୁଥିବା ଜିନିଷ ସବୁ ଖୋଜି ଖୋଜି ଆଣି ତାଙ୍କ ସହରରେ ଓ ଆଖପାଖ ଗାଁରେ ବିକି ବେଶ୍ ଦି' ପଇସା ପାଏ । କୋଉଠି କୋଉ ଜିନିଷ ମିଳେ ତା'ର ଓର ଉଣ୍ଡୁଥାଏ କେବଳ ।

ଦିନେ କୁଆଙ୍ଗ୍-ଟୁଙ୍ଗ୍ ବୋଲି ଗୋଟେ ଜାଗାର ନା ଶୁଣିଲା । ସେଟା କୁଆଡ଼େ ବେପାରର ସେଣ୍ଟର ଜ'ଗା । ଅବଶ୍ୟ ଦୂରବାଟ । କିନ୍ତୁ ଗଲେ ଲାଭ ପ୍ରଚୁର । ଆଉ କ ମାଓ ସମୟ ନଷ୍ଟ କରେ ! କିଛି ଟଙ୍କା ଧରି ସାଙ୍ଗେ ସାଙ୍ଗେ ବାହାରି ପଡ଼ିଲା । ପଇସା ଥିଲେ କ'ଣ ହବ ! କୋଉ ଗାଡ଼ି ମଟରର ଚଳନ ସିଏ ! ଚାଲି ଚାଲି କେତେଦିନ ବିତିଗଲା । ଦୁର୍ଯୋଗ ଉପରେ ହାତ କାହାର ! କୁଆଙ୍ଗ-ଟୁଙ୍ଗ୍ ପାଖ ଧରିଲାଣି, ଦିନେ ରାତିରେ ତା'ର ଟଙ୍କା ପଇସା ଲୁଗାପଟା ସବୁ ଚୋରି ହୋଇଗଲା । କୋଉ ଚିହ୍ନା ପରିଚୟ ଅଛି ଯେ କିଏ ସେଠି ତାକୁ ସାହାଯ୍ୟ କରିବ ? ଶେଷକୁ ଅବସ୍ଥା ଏମିତି ହେଲା ଯେ ପେଟ ପାଇଁ ତାକୁ ହାତ ପତେଇବାକୁ ପଡ଼ିଲା ।

କପାଳକୁ ନିନ୍ଦିବା ଛଡ଼ା ଆଉ ଗତି କ'ଣ ? କେତେ ଶୁଣିଥିଲା ଏ ଜାଗାର ନାଁ ହେଲେ ଦେଖୁଚି ଏ କଅଣ ? ଲୋକଗୁଡ଼ାକ ଏତେ ଗରିବ ! ଧନ ସମ୍ପତ୍ତିର ଅଭାବ ନାହିଁ—ସହରା ଦି'କଡ଼େ କଡ଼େ ବଡ଼ ବଡ଼ କୋଠା-ସବୁ । ହେଲେ ଦାଣ୍ଡରେ ଗୋଡ଼ ଭାଙ୍ଗି ଠିଆ ହୋଇଥିଲେ ଖାଇବାକୁ ଦିନରେ ଥରେ ମିଳିବା ମୁସ୍କିଲ । ଭିକ କେମିତି ମାଗନ୍ତି ସେ କଥା କ'ଣ ମାଓକୁ ଜଣା ? ଧୀରେ ଧୀରେ ତା ଅବସ୍ଥା ଭାରି ଖରାପ ହୋଇଗଲା ।

ଦିନେ ଜଣେ ଧନୀ ଜମିଦାରଙ୍କ ଦାଣ୍ଡରେ ଠିଆ ହୋଇ ହାତ ପତେଇଛି, ଦେଖିଲା ମାଲିକ ତାକୁ ଘର ଭିତରକୁ ଆସିବା ପାଇଁ ଡାକୁଛନ୍ତି । ପ୍ରଥମେ ତାକୁ କାବା ଲାଗିଲା, "କ'ଣ ୟାଙ୍କ ମତଲବ୍" ଧୀରେ ଧୀରେ ସେ ଯାଇ ଘର ଭିତରେ ପହଞ୍ଚିଲା । ମାଲିକ ତାକୁ ଶହେ ଟଙ୍କାର ନୋଟ୍‌ଟିଏ ଦେଖେଇ କହିଲେ, ଦେଖ, ମୋର ବଡ଼ ଝିଅକୁ ଯଦି ଆଜ ରାତିକ ପାଇଁ ବାହାହେବୁ ଓ କାଲି ସକାଳୁ ଉଠି ଏ ସହର ଛାଡ଼ି ଚାଲିଯିବା ପାଇଁ ରାଜିହେବୁ ତେବେ ଏ ଶହେ ଟଙ୍କା ପୁରସ୍କାର ମିଳିବ ।

ମାଓ କାବା ହେଲା । ଏ ଭଗବାନଙ୍କର ବରଦ ! ପଇସାଟିଏ ମିଳିବା ଯେତେବେଳେ ସ୍ୱପ୍ନ, ବିନା ପରିଶ୍ରମରେ ଶହେ ଟଙ୍କା, ପୁଣି ଜମିଦାରଙ୍କ ସୁନ୍ଦରୀ ଝିଅ ସାଙ୍ଗେ ରାତିକ ପାଇଁ ହେଲେ ବି ବାହାଘର । ଏ କ'ଣ କମ ଭାଗ୍ୟର କଥା । ସେ ଲୋଭ ସମ୍ବରଣ କରି ପାରିଲା ନାହିଁ । ଏ କଥା ପଛରେ କ'ଣ ରହସ୍ୟ ଅଛି ଭାବିବାକୁ ତାକୁ ବେଳ କାହିଁ ! ସେ ସଙ୍ଗେ ସଙ୍ଗେ ରାଜି ହୋଇଗଲା । ଦିନ ସାରା ସେ କେବଳ ସେଇ ସୁନ୍ଦରୀ ଝିଅଟି ବିଷୟରେ ଚିନ୍ତା କରିବାକୁ ଲାଗିଲା ।

ରାତି ଆସିଲା । ଜଣେ କେହି ତାକୁ ସୁନ୍ଦରଭାବେ ସଜାସଜି ହୋଇଥିବା ଘର ଭିତରକୁ ବାଟ କଢ଼େଇ ନେଇଗଲା । ପରିଚ୍ଛନ୍ନ ବିଛଣାଟି ଉପରେ ପରୀ ଭଳି ସୁନ୍ଦର ଝିଅଟିଏ ବସିଛି । ମାଓ ଏଡ଼େ ସୁନ୍ଦର ଝିଅ ଆଗରୁ କେବେ ଦେଖିଛି ବୋଲି ମନେ ପକେଇ ପାରିଲା ନାହିଁ । ରାତିକ ପାଇଁ ହେଲେ ବି ଏ ଝିଅଟି ତା'ର ସ୍ତ୍ରୀ । କିନ୍ତୁ ଏଡ଼େ ସୁନ୍ଦରୀ ଝିଅଟିକୁ ବାପ ତା'ର ଗୋଟିଏ ଭିକାରିକୁ ରାତିକ ପାଇଁ ବାହା କରିଦେଲା କାହିଁକି ସେ ମୋଟେ ଭାବି ପାରୁ ନ ଥାଏ ।

ଝିଅଟି ପରିଚାରିକାକୁ ବିଦା କରି ଦେଇ ମାଓକୁ ଭିତରକୁ ଡାକିଲା । ଘର ଭିତରର ଚାକଚକ୍ୟ ଦେଖି ମାଓ ଭାବୁଥାଏ ଆଜି ରାତିକ ପାଇଁ ଏ ଘରର ବାଦଶାହା ।

ଝିଅଟି ନିର୍ବିକାର ଚିତ୍ତରେ ଆସି ମାଓ ପାଖରେ ଲାଗିକରି ବସି-ପଡ଼ିଲା । ମାଓ ତାକୁ କିଛି ପଚାରିବା ପୂର୍ବରୁ ସେ କହିବାକୁ ଆରମ୍ଭ

କହିଲା—"ତୁମେ ବୋଧେ ଆମ ଆଡ଼କା ଲୋକ ନୁହଁ, ସେଥିପାଇଁ ମତେ ରାତକ ପାଇଁ ବାହା ହୋଇ ତୁମ ଖୁସି ଘର ଧରୁନ, କିନ୍ତୁ ତୁମେ ଜାଣିନ ବାପାଙ୍କର ଏ ଅଭିପ୍ରାୟ ତୁମଲାଗି ଅଭିଶାପ । ଆମ ଦେଶରେ ଗୋଟିଏ ପ୍ରଥା ଅଛି—ଝିଅଟିଏ ବାହାହୋଇ ଯିବା ପୂର୍ବରୁ ଜଣେ ଅଚିହ୍ନା ପୁରୁଷ ସହିତ ତା'ର ରାତକ ପାଇଁ ବାହାଘର ହୁଏ । ଫଳରେ ତା' ଦେହରେ ଥିବା ସମସ୍ତ ରୋଗ ଜୀବାଣୁ ସେଇ ଲୋକଟି ଦେହରେ ସଂକ୍ରମିତ ହୋଇଯାଏ, ଝିଅଟି ଚିରଦିନ ଲାଗି ରୋଗ ମୁକ୍ତ ହୋଇ ସୁସ୍ଥ ସବଳ ପିଲାମାନଙ୍କର ମା' ହୁଏ । ଯେଉଁ ଲୋକଟି ସେଇ ସଂକ୍ରମିତ ଜୀବାଣୁମାନଙ୍କର ଶିକାର ହୁଏ ତା'ପରେ ଦେହରେ ଅଦ୍ଭୁତ ରୋଗ ସବୁ ଦେଖାଦିଏ । ଦେହ ସାରା ଘା' ଘଉଡ଼ ହୋଇ ସେ ଅଳ୍ପଦିନ ଭିତରେ ମରିଯାଏ । ପୁଣି ରୋଗକୁ ଅନ୍ୟ ଲୋକକୁ ଦେଇ ନ ଥିବା ଝିଅର ଜୀବନ ଆହୁରି ଯନ୍ତ୍ରଣାଦାୟକ । ବୟସ ବଢ଼ିଗଲେ ସେ ଜୀବାଣୁମାନେ ତା' ଶରୀରକୁ ଆକ୍ରମଣ କରି ତାକୁ କାବୁ କରିଦିଅନ୍ତି ଓ ସେ ଯନ୍ତ୍ରଣା ଭୋଗି ଭୋଗି ମରେ । ତୁମେ ଦରିଦ୍ର ହୋଇପାର । ହେଲେ ଯନ୍ତ୍ରଣା ଭୋଗି ମରିବାକୁ ଏତେ ଆଗ୍ରହ କାହିଁକି ? ମତେ ତୁମକୁ ଦେଖିଲେ ବିକଳ ଲାଗୁଛି । ମୁଁ ତୁମରି ମୃତ୍ୟୁର କାରଣ ହବାକୁ ଚାହେଁ ନାହିଁ । ମୋର ଭାଇ ନାହିଁ । ଆଜିଠାରୁ ତୁମେ ମୋର ଭାଇ ହେଲ । ଆଜି ରାତକ ପାଇଁ ହେଲେ ମୁଁ ମୋର ଭାଇଟିର ଆଦର ପାଏ । ଚିରଦିନ ମୁଁ ତୁମକୁ ମନେ ରଖିବି । ମୁଁ ଯଦି ତୁମକୁ ଦେଖିଲା ମାତ୍ରେ ସ୍ନେହ କରି ନ ଥାନ୍ତି ଏ ସବୁ କଥା ନ କହି ନିର୍ବିକାର ଚିତ୍ତରେ ତୁମକୁ ମୃତ୍ୟୁର ଅନ୍ଧାର ଗହ୍ୱର ଭିତରକୁ ଠେଲି ଦେଇ ନିଶ୍ଚିନ୍ତ ରହିଥାନ୍ତି । କିନ୍ତୁ ଏ ଜନ୍ମରେ ଯିନା ଆମର ଦେଖା ହୋଇ ନ ଥିଲା, ପୂର୍ବ ଜନ୍ମରେ ନିଶ୍ଚେ ଆମେ ଭାଇ ଭଉଣୀ ଥିଲେ । ମୋ ଲାଗି ଏତିକି କରିବ—

ଯେତେବେଳେ ମୋ ଦେହରେ ରୋଗ ମାଡ଼ିଯିବ ବାପା ନିଶ୍ଚୟ ମତେ ଘରୁ ବିଦା କରିଦେବେ । ତୁମର ଠିକଣା ଦେଇ ଯାଇଥାଅ, ମୁଁ ତୁମକୁ ଖୋଜି ତୁମ ଘରେ ପହଞ୍ଚିବି । ସେତେବେଳେ ଏଇ ରୋଗିଣୀଟିକୁ ଘୃଣାରେ ଘରୁ ତଡ଼ି ଦିବନି, ମୋର ଏତିକି ମାଗୁଣି ।" ଏକା ନିଶ୍ୱାସକେ ଏ କଥାତକ କହିସାରିଲା ବେଳକୁ ତା' ଆଖିରୁ ଲୁହ ଝରି ପଡ଼ୁଥାଏ ।

ଏ ସବୁ କଥା ଶୁଣି ମାଓର ଆଶ୍ଚର୍ଯ୍ୟର ସୀମା ରହିଲାନି । ଝିଅଟି ମୁହଁକୁ ଭଲକରି ନିରେଖି ଚାହିଁଲା । କେତେ ନିଷ୍ପାପ ଆଖି ଦୁଇଟି । ତା ମୁହଁ ଗୋଟିଏ କଅଁଳିଆ ଶ୍ରେଷ୍ଠ ଝିଅର ମୁହଁପରି ତାକୁ ଲାଗିଲା । ଏଇ ଝିଅଟା ତାଠାରୁ କେତେ ଶ୍ରେଷ୍ଠ, ତା'ର ଏତେ ଶୁଭ ମନାସୁଚି ! ନିଜକୁ ଧିକ୍କାରିଲା ସେ । ଯାହାକୁ ସେ ତା'ର ସ୍ତ୍ରୀ ବୋଲି ଭାବୁଥିଲା କେମିତି ? ମନ ଭିତରେ ତା' ପାଇଁ ମମତା ଜାଗିଲା । ସେ ତାକୁ ସ୍ନେହରେ କୋଳକୁ ଟାଣିନେଇ ଗେହ୍ଲା କରିଦେଇ କହିଲା, "ତୋ ପରି ଭଉଣୀ ମତେ ଜନ୍ମେ ଜନ୍ମେ ମିଳୁଥାଉ । ଭଗବାନ ସାକ୍ଷୀ । ମୁଁ ଆଜି ତତେ କଥା ଦେଇ ଗଲି, ଜୀବନରେ ଯେ କୌଣସି ମୁହୂର୍ତ୍ତରେ ଯେ କୌଣସି ଅବସ୍ଥାରେ ମୋ ଘରେ ପହଞ୍ଚିଲେ ତୋ ଭାଇ ସବୁଦିନେ ତତେ ଏମିତି ଗେହ୍ଲା କରିବାକୁ ଅପେକ୍ଷା କରି ରହିଥିବ । ମୋ ଉପରେ ଏଇ ଭରସା ରଖିଥିବୁ ।" ଭାଇ ଭଉଣୀ ଦିହେଁ କୁଣ୍ଢିଆ କୁଣ୍ଢି ହୋଇ ବହୁତବେଳ କାନ୍ଦିଲେ । ପରସ୍ପରକୁ ସେମାନେ ଠିକ୍ ବୁଝିଗଲେ ।

ମାଓ ତା'ର ଘରର ଠିକଣା ଝିଅଟିକୁ ବତେଇ ଦେଲା ଓ ତା'ର ସେତେବେଳର ସମସ୍ୟା କଥା କହିଲା, "ଦେଖ୍ ମୋର ପ୍ରକୃତରେ ତୋଠାରେ ଲୋଭ ନ ଥିଲା । ମୁଁ ଯେ ତୋ ବାପାଙ୍କ କଥାରେ ରାଜି ହେଲି ତା'ର ପ୍ରକୃତ କାରଣ ମୋର ଟଙ୍କାର ଅଭାବ । ମୁଁ ଟଙ୍କା କିଛି ନ ପାଇଲେ ଘରକୁ ଫେରିଯାଇ ପାରୁନି ।"

ଝିଅଟି କିଛି ଟଙ୍କା ଲୁଚଇ କରି ଆଣି ତାକୁ ଦେଲା । ଦୁହିଁଙ୍କ ଭିତରେ କଥା ହେଲା—ରାତି ଥିବ ମାଓ ଉଠି ଚୁପ୍‌ଚାପ୍ ସେଠା ଛାଡ଼ି ଚାଲି ଯିବ । କେହି ଜାଣିବେ ନାହିଁ ସେମାନଙ୍କ ଭିତରର କଥାବାର୍ତ୍ତା, ତାଙ୍କ ସମ୍ବନ୍ଧ, କେବଳ ସେଇ ଦୁହେଁ ଦୁହିଁଙ୍କୁ ଜାଣିଥିବେ ଓ ମନେ ରଖିଥିବେ । ଏମିତି ଦୁଃଖ ସୁଖ ଗପସପ ଭିତରେ ରାତି କଟିଲା । ରାତି ଜାଙ୍ଗୁଲୁ ଜାଙ୍ଗୁଲୁ ଅଛୁ ମାଓ ଉଠି ବସିଲା । ନିଶ୍ଚିନ୍ତରେ ତା'ର ପାଖରେ ଶୋଇ ପଡ଼ିଥିବା ନିଷ୍ପାପ ଝିଅଟିର କଅଁଳିଆ ମୁହଁକୁ ଚାହିଁ ମନେ ମନେ ତାକୁ ଆଶୀର୍ବାଦ କରି ଟଙ୍କାତକ ଧରି ଚୁପ୍‌ଚାପ୍ ଚାଲିଗଲା ।

ବାପ ସକାଳୁ ଉଠି ଭିକାରିଟାକୁ ଟଙ୍କା ଦେଇ ବିଦା କରିବା ପାଇଁ ଅପେକ୍ଷା କରି କରି ରହିଲେ । ବୋକା ଲୋକଟା ରାତିରୁ ଉଠି

ଚାଲି ଯାଇଛି ଶୁଣି ଟଙ୍କାତକ ରହିଗଲା ବୋଲି ଭାରି ଖୁସି ହୋଇଗଲେ । ସଂସାରରେ ଭାଇ ଭଉଣୀଙ୍କ ଛଡ଼ା ଏ ସମ୍ବନ୍ଧ କଥା ଆଉ କେହି ଜାଣି ପାରିଲେ ନାହିଁ ।

ବାପ ଖୁସି ହୋଇ ଝିଅ ଲାଗି ବର ଖୋଜିବାରେ ଲାଗି ପଡ଼ିଲେ । ବିଧିର ବିଧାନ ଅନ୍ୟ ପ୍ରକାର । ଅଳ୍ପଦିନ ଭିତରେ ଝିଅଟି ଦେହରେ ଲାଲ୍ ଲାଲ୍ ଫୋଟକା ସବୁ ଦେଖା ଦେଲା—ସେଗୁଡ଼ାକ ବଢ଼ି ବଢ଼ି ଶେଷକୁ ଭୟଙ୍କର ରୂପ ଧାରଣ କଲା । ତା ଆଶଙ୍କା ସତ ପଡ଼ିଲା । ବାପ ତାକୁ ଘରୁ ବାହାର କରି ଦେଲେ । ଭାଗ୍ୟକୁ ଆଦରି ଝିଅଟି ଭାଇର ଠିକଣାଟି ଧରି ବାଟ ଖୋଜି ଖୋଜି ଚାଲିବାକୁ ଲାଗିଲା । କାହିଁ କେତେ ବାଟ ତାକୁ ଯିବାକୁ ହବ । ଏ ରୋଗିଣା ଦେହ । ଲୋକେ ଦେଖିଲେ, ଘୃଣାରେ ବାଟ ଭାଙ୍ଗି ଚାଲିଯାଉଛନ୍ତି । ଭିକ ମାଗି ମାଗି ସେ ବାଟ ପଚାରି ପଚାରି ଚାଲିଥାଏ । ପ୍ରତି ମୁହୂର୍ତ୍ତରେ ସେ ନିଜର ମୃତ୍ୟୁ କାମନା କରିଥାଏ । ଭାଇଟିକୁ ଥରେ ଆଖି ପୂରେଇ ଦେଖିନେଲେ ସେ ନିଶ୍ଚିନ୍ତରେ ମରି ପାରନ୍ତା । ହେଲେ ସେତକ ତା ଭାଗ୍ୟରେ ଅଛି କି ନାହିଁ କିଏ ଜାଣେ ? ବାଟ ଯାକ ପଚାରୁଥାଏ ସାଓ-ସିଂ ସହରର କାଓ-ଫୁ ଗାଁ ଆଉ କେତେ ବାଟ ! ସତେ କି ତା ପାଇଁ ସେ ଜାଗା ସ୍ୱର୍ଗ ।

ଦେହ ସାରା ଘା' ପାଚି ପୋକ ହେଲେଣି, ଚାଲିବାକୁ ବଳ ନାହିଁ । ଶେଷରେ ଦିନେ ଘୁସୁରି ଘୁସୁରି ଯାଇ କାଓ-ଫୁ ଗାଁରେ ପହଞ୍ଚିଲା । ତାକୁ କି ଜଣା ସେଇ ଭିକମଗା ଭାଇ ଏଥି ଭିତରେ ଏତେ ଧନୀ ହୋଇ ଗଲେଣି ! ବାହା ସାହା ହୋଇ ଘର ଦ୍ୱାର କରି ସୁଖରେ ରହିଲାଣି ।

ହଠାତ୍ ସେଇଦିନ କାହିଁକି କେଜାଣି ସେଇ ନିରୀହ ଝିଅଟିଏ କଥା ମାଓର ଭାରି ମନେ ପଡୁଥାଏ । ଝିଅଟି ତା ଜୀବନକୁ ରକ୍ଷା କଲା, ସତେ କଣ ସେ ରୋଗ ଭୋଗିଲା ନା ବାହା ସାହା ହୋଇ ସୁଖରେ ଘର ଦ୍ୱାର କରି ରହିଲା । କେମିତି ଟିକେ ତା ଖବର ପାଆନ୍ତା କି ? ଭଉଣୀଟିର ସରଳଆ କଥା ଓ ନିରୀହ ମୁହଁଟି ବାରମ୍ବାର ମନେ ପଡ଼ି ତାକୁ ଭାରି ବ୍ୟସ୍ତ ଲାଗୁଥାଏ ।

ଏମିତି ଭାବି ଭାବି ସେ ଦାଣ୍ଡ ଦୁଆରକୁ ବାହାରି ଆସିଚି, ଦେଖିଲା, ଛିଣ୍ଡା ନେକଡ଼ା ପିନ୍ଧି ଭିକାରୁଣୀଟିଏ ରାସ୍ତାରେ ଯାଉଛି । ଦେହ ସାରା ଘା,

ଗଛରେ ପାଖରେ ଠିଆ ହୋଇ ହଉନ । ତଥାପି ସେ କ'ଣ ଭାବିଲା କେଜାଣି ନଦେଖି କରି ତା' ମୁହଁକୁ ଚାହିଁଲା । ହଠାତ୍ ସ୍ତ୍ରୀ ଲୋକଟି ଅଟକି ଯାଇ ସାତ ଛିଣ୍ଡା ନେକେଡ଼ା କାନରୁ ଫିଟାଇ ଖଣ୍ଡେ ଲେଖୁକୋସ୍ତ କାଗଜ ତା' ଆଗରେ ମେଲାଇ ଧରିଲା । ସେଇ ଛିଣ୍ଡା କାଗଜ ଖଣ୍ଡରେ ନିଜ ହାତ ଲେଖା ଠିକଣା ଦେଖି ମାଓ ତା ଭଉଣୀକୁ ଠିକ୍ ଚିହ୍ନି ପାରିଲା । ଉଃ, କ'ଣ ହୋଇଛି ତା ଦେହ । ଏତେ ସୁନ୍ଦରୀ ଝିଅଟାର କି ଦଶା ହୋଇଛି—ଚିହ୍ନିବାର ଉପାୟ ନାହିଁ । ଯୋଉ ମୁହଁକୁ ଚାହିଁଲେ ଦିନେ ଆଖି ଫେରୁ ନ ଥିଲା ସେ ମୁହଁ ଫାଟି ବେଙ୍ଗଳା ବେଙ୍ଗଳା ହୋଇଛି—ମାଛି ଭଣ ଭଣ ହୋଇ ବେଢ଼ିଛନ୍ତି । ମାଓ ମନେ ମନେ ନିଜକୁ ପାପୀ ମନେ କଲା । ଆହା ବିଚାରୀ ତାକୁଇ ରକ୍ଷା କରିବାକୁ ଯାଇ ଏ କଷ୍ଟ ଭୋଗୁଛି ।

ଘର ଭିତରକୁ ଦୌଡ଼ିଯାଇ ସ୍ତ୍ରୀକୁ ଡାକି ଆଣି ଝିଅଟିକୁ ଚିହ୍ନାଇ ଦେଲା । ଅନେକଥର ଝିଅଟି କଥା ସେ ତା' ସ୍ତ୍ରୀକୁ କହିଛି । ତେଣୁ ତାକୁ ଚିହ୍ନିବାରେ ସ୍ତ୍ରୀର ଅସୁବିଧା ହେଲାନି ।

ସ୍ୱାମୀ ସ୍ତ୍ରୀ ଦୁହେଁ ସାଙ୍ଗ ହୋଇ ରୋଗୀଣା ଝିଅଟିକୁ ବଗିଚ ଘରକୁ ନେଇଯାଇ ଘା' ସବୁ ଧୋଇ ଦେଇ ଔଷଧ ଲଗାଇ ଯତ୍ନ କରିବାକୁ ଲାଗିଲେ । ଦିନ ପରେ ଦିନ ଗଡ଼ିବାକୁ ଲାଗିଲା । ସ୍ୱାମୀ ସ୍ତ୍ରୀ ଦୁହିଁଙ୍କ ଯତ୍ନ ଯେତିକି ବଢ଼ୁଥାଏ ଝିଅଟିର ଅବସ୍ଥା ଦିନକୁ ଦିନ ସେତିକି ଖରାପ ହେଉଥାଏ । ସେ ତ ଶେଷ ମୁହୂର୍ତ୍ତରେ ପହଞ୍ଚି ଥାଏ, ପ୍ରାର୍ଥନା କରିବା ଛଡ଼ା ତା'ଲାଗି ତାଙ୍କର ଆଉ କିଛି କରିବାର ନ ଥାଏ ।

ଦିନେ ସନ୍ଧ୍ୟାବେଳେ ଝିଅଟି ଭାଇକୁ ଡାକି କହିଲା—"ଆଉ ମୋ ଲାଗି କଷ୍ଟ କରନି । ତୁ-କୁ ଥରେ ଦେଖିବି ବୋଲି ଏତେ ବାଟ ଧାଇଁ ଆସିଥିଲି । ମୋର ସେ ଆଶା ପୂରଣ ହୋଇଗଲା । ମତେ ତୁମେ ଗ୍ରହଣ କଲ, ସେଇ ମୋର ଯଥେଷ୍ଟ । ମୁଁ ତ ମରିବି, ମୋ କଥା ମାନିବ, ମୋତେ କବର ଦବା ଲାଗି କିଛି ଆଡ଼ମ୍ବର କରିବ ନାହିଁ, କେବଳ ମୋ ଆତ୍ମାର ସଦ୍‌ଗତି ଲାଗି ପ୍ରାର୍ଥନା କରିବ । ଏଇ ମୋର ଶେଷ ଇଚ୍ଛା ।

ଏ କଥା ଭାଇଟିକୁ ଭାରି ବାଧିଲା ! ଭଗବାନ ତା' ଡାକ ଶୁଣିଲେନି । ତା' ପରିଶ୍ରମ, ପ୍ରାର୍ଥନା ସବୁ ବିଫଳ ହେଲା । ମନ ଦୁଃଖରେ ସେ ଝିଅଟିକୁ ଛାଡ଼ି ଦେଇ କାନ୍ଦି କାନ୍ଦି ସେଠୁ ବାହାରି ଗଲା ।

ରାତି ଅଧରେ ତା'ର ନିଦ ଭାଙ୍ଗିଗଲା । ତା'ର ମନେ ହେଲା ଭଉଣୀଟି ବୋଧେ ଭୁଲିଗଲାଣି । ସେ ଆଉ ଧୈର୍ଯ୍ୟ ଧରି ପାରିଲାନି । ସ୍ତ୍ରୀକୁ ଉଠାଇ ଦୁହେଁଯାକ ବଟିଗୁ ଘରକୁ ଦୌଡ଼ି ଆସିଲେ ।

ଦୁଆର ମୁହଁରୁ ସେମାନେ ଦେଖିଲେ ଖଟ ଖାଲି । ଝିଅଟି ସେଠାରେ ନାହିଁ । ଘର ଭିତରକୁ ପଶି ଗଲାରୁ ଆଖିରେ ପଡ଼ିଲା ସ୍ଥିରହୋଇ ଗୋଟିଏ କଣରେ ଝିଅଟି ଶୋଇଛି ସେ ମରି ଯାଇଛି ଭାବି ଭାଇଟି ବିକଳ ହୋଇ ତାକୁ ଉଠେଇ ନେଇ ଖଟ ଉପରେ ଶୁଆଇ ଦେଇ ଦେଖିଲା— ଝିଅଟି ଦେହରୁ ଘା' ସବୁ ମଉଳି ଯାଇଛି ଓ ସେ ନିଶ୍ଚିନ୍ତରେ ଶୋଇ ପଡ଼ିଛି ।

ତା'ପରଠୁ ବିନା ଔଷଧ ଓ ଯତ୍ନରେ ସେ ଭଲ ହୋଇ ଉଠିଲା ! ଭଲ ହେଲା ପରେ ସେ ଦିନେ ତା'ର ଅଦ୍ଭୁତ ଅନୁଭୂତି କଥା କହିଲା ।

"ଶୋଷରେ ସେ ରାତିରେ ମୋ ତଣ୍ଟି ଶୁଖି ଯାଉଥାଏ । ବିକଳରେ ଚତୁଆଡ଼େ ଦୃଷ୍ଟି ପକେଇ କବାଟ କଣରେ ଗୋଟେ ମାଠିଆରେ ଅଳ୍ପ ମୁନ୍ଦାଏ ପାଣି ଥିବାର ଦେଖିଲି । ମାଠିଆ ଟେକି ମୁହଁରେ ଲଗାଇ ବିକଳରେ ପିଇଗଲି । କି ବିକୃତ ସେ ସ୍ୱାଦ । ଏଇଲେ ଭାବିଲେ ଦେହ ବୁଲେଇ ଆସୁଛି । ତା' ଭିତରେ ଗୋଟେ କାଳିଆ ବିଷାକ୍ତ ସାପ ପଡ଼ି ପଚି ଯାଇଥିଲା—ତା'ର ବିଷ ସେ ପାଣିରେ ଚରି ଯାଇଥିଲା । ସେଇ ବିଷାକ୍ତ ପାଣି ମୋ ଦେହର ବିଷକୁ କାଟି ଦେଇ ମତେ ସୁସ୍ଥ କରି ଦେଲା । କିଏ ଜାଣିଥିଲା ବିଷ ଏମିତି ବିଷକୁ କାଟେ ! ଭାଗ୍ୟ, ଭଗବାନଙ୍କର ବରାଦ । ମୁଁ ତୁମ ପାଖକୁ ଆସି ଭଲ ହେବ ବୋଲି ଯୋଗ ଥିଲା ।"

ଭଉଣୀଟିର ସୌନ୍ଦର୍ଯ୍ୟ ପୁଣି ଫେରି ଆସିଲା । ଭାଇ ତା'ର ସମସ୍ତ ଦାୟିତ୍ୱ ନେଇ ତାକୁ ସୁଖରେ ରଖିଲା ।

—o—

# ଇଷ୍ଟ ଦେବତାଙ୍କ ଠିକ ମନ୍ଦିର

ଅନେକ ଦିନ ତଳର କଥା । ହାଙ୍ଗ୍-ଚୁ ରାଜ୍ୟରେ ଥରେ ଭୟଙ୍କର ଦୁର୍ଭିକ୍ଷ ପଡ଼ିଥାଏ । ବର୍ଷା, ଶୀତ ଯାଇ ପୁଣି ଖରାଦିନ ଆସିଗଲା । ଟୋପାଏ ହେଲେ ବର୍ଷା ନାହିଁ । ଭୂଇଁ ସବୁ ଫାଟି ବେଙ୍ଗଳା ବେଙ୍ଗଳା ହୋଇଗଲା । ଯୁଆଡ଼େ ଚାହିଁବ ଗଛ ସବୁ ପତ୍ରଝଡ଼ା ହୋଇ ଥୁଣ୍ଟା ହୋଇଛନ୍ତି । ପିଇବାକୁ ଟୋପେ ପାଣି କୋଉଠି ମିଳୁନି । କୂଅ ପୋଖରୀ ତ କୋଉଦିନୁ ଶୁଖି ଗଲଣି । ଲୋକଙ୍କ ବିକଳ କହିଲେ ନ ସରେ । ପଶୁ ପକ୍ଷୀ ସବୁ ଶୋଷରେ ଆଉଟୁ ପାଉଟୁ ହୋଇ ରାସ୍ତା କଡ଼ରେ ମରି ପଡ଼ିଲେ । ଆକାଶକୁ ଚାହିଁ ଚାହିଁ ଲୋକଙ୍କ ଆଖିରୁ ପାଣି ମଲା । ଘରେ ଘରେ ମେଘ ଦେବତାଙ୍କ ପୂଜା ଅର୍ଚ୍ଚନା ବିଫଳ ହେଲା । ଗାଁ ଇଷ୍ଟଦେବତାଙ୍କ ମାଜଣା ଚାଲିଥାଏ, ଧୂପ ଦୀପ ଭୋଗ ରାଗ ଶଙ୍ଖ ମହୁରୀରେ କାନ ଅତଡ଼ା ପଡ଼ୁଥାଏ । ସବୁ ବିଫଳ । ଆକାଶରେ ଖଣ୍ଡେ ହେଲେ କଳା ବଉଦ ଭାସିବା କେହି ଦେଖିଲେନି । ପରିଷ୍କାର ନିର୍ମଳ ଆକାଶ । ଲୋକଙ୍କ ଭିତରେ ହାହାକାର ପଡ଼ିଗଲା । ଭଗବାନ ଯଦି ଡାକ ନ ଶୁଣିଲେ କିଏ ଆଉ ଅଛି ? କାହା ଉପରେ ଭରସା !

ନିରାଶ ଓ ଦୁଃଖ ଭିତରେ ହଠାତ୍ ଲୋକଙ୍କ ଭିତରେ ଏକ ଅଦ୍ଭୁତ ପାଗଳାମି ବାହାରିଲା । କେହି ଜଣେ ବୁଦ୍ଧି ଦେଲା, "ଆରେ ! ଠାକୁରଙ୍କୁ କାହିଁକି ଡାକୁଛ ! ଆମକୁ ବଞ୍ଚାଇବା ଦାୟିତ୍ୱ କ'ଣ ତାଙ୍କର ! ସେ ତ ସ୍ୱର୍ଗ ନ ହେଲେ ପାତାଳ କଥା ବୁଝିବେ—ଆମ ଦାୟିତ୍ୱ ତ ଆମ ରାଜାଙ୍କର । ହଠାତ୍ ଏକା ସାଙ୍ଗରେ ହୁଣ୍ଡାମସ୍ତି ଆ ସ୍ୱର ଶୁଭିଲା—ଚାଲ୍‌ରେ ଭାଇ ! ଆମ ଗଭର୍ଣ୍ଣର୍‌ଙ୍କ ପାଖକୁ ଯିବା । ସେଇ ଆମ କଥା ବୁଝିବେ ।"

ଥରେ ଏ ପ୍ରସ୍ତାବ ହେଲେ ଆଉ କି ସମ୍ଭାଳା ପଡ଼େ ! ଚାଲିଲେ ହଜାର ହଜାର ଲୋକ । ସିଧା ଗଭର୍ଣ୍ଣରଙ୍କ ଘର ଆଗରେ ଯାଇ ହାଜର । ପ୍ରତ୍ୟେକ ଲୋକର ମୁହଁରେ ସେଇ ଗୋଟିଏ କଥା—ଆମର ବର୍ଷା ଦରକାର । ବର୍ଷା କରାଅ । ପାଣି ଦିଅ ।

ଗଭର୍ଣ୍ଣର୍ ଘର ଭିତରୁ ବାହାର ଆସି ଲୋକଙ୍କୁ ଭେଟିଲେ । ସେଇ ବିଶାଳ ଜନତାର ପାଗଳାମିକୁ ସେ ବେଶ୍ ବୁଝିପାରିଲେ । ସବୁଠୁ ନିରାଶ ହୋଇ ସେମାନେ କେତେ ଆଶା ନେଇ ଶେଷରେ ତାଙ୍କ ପାଖରେ ପହଞ୍ଚିଛନ୍ତି, କେମିତି ସେ କହିଦେବେ, "ମୁଁ ବର୍ଷା କରିପାରିବିନାହିଁ, ତୁମେମାନେ ଫେରିଯାଅ !" ଶେଷ ଜାଗାରୁ ନିରାଶ ବାଣୀ ଶୁଣିଲେ ଲୋକ ଯେ କଅଣ କରିବେ କିଏ ଜାଣେ ? ଏ ସବୁ ଗୋଳମାଳରୁ ସାମୟିକ ଭାବରେ ରକ୍ଷା ପାଇବା ଲାଗି ସେ ଲୋକଙ୍କ କଥାରେ ରାଜିହୋଇ ସାହାଯ୍ୟ କରିବେ ବୋଲି ଜଣାଇ ଦେଲେ । ଲୋକେ ତାଙ୍କର କଥାରେ ବିଶ୍ବାସ କରି ଫେରିଗଲେ । ତା'ପରେ ଆରମ୍ଭ ହୋଇଗଲା ଗଭର୍ଣ୍ଣର୍‌ଙ୍କର ସମସ୍ୟା । ସେ କଅଣ ଭଗବାନ ହୋଇଛନ୍ତି ଯେ କହିଦେଲା ମାତ୍ରକେ ବର୍ଷା ମାଡ଼ି ଆସିବ ! ସାଧାରଣ ମଣିଷଟିଏ ସେ । ତାଙ୍କ ହାତରେ କ'ଣ ଅଛି ! ଲୋକଙ୍କୁ ମିଛ ଆଶା ଦେଇ ଫେରେଇ ଦେଇଛନ୍ତି, କେମିତି ଏଥିରୁ ଉଦ୍ଧାର ମିଳିବ ଏଇ ଚିନ୍ତାରେ ଦିନ କଟିଗଲା । ଏତେ ଚିନ୍ତାରେ କି ନିଦ ହୁଏ ରାତିରେ । ଛଟପଟ ହୋଇ ରାତି ପାହିଲା । ସକାଳୁ ସକାଳୁ ଲୋକ ପଠେଇ ତାଙ୍କ ସହରର ଇଷ୍ଟ ଦେବତାଙ୍କ ମୂର୍ତ୍ତିକୁ ତାଙ୍କ ଦାଣ୍ଡକୁ ନେଇ ଆସିଲେ । ଠାକୁରଙ୍କୁ ତାଙ୍କ ଆସ୍ଥାନରୁ ଉଠାଇ କାହିଁକି କୁଆଡ଼େ ନିଆ ହେଉଛି ବୁଝି ନ ପାରି ଲୋକେ ସନ୍ଦେହରେ ପଡ଼ିଲେ । ଘଟଣା କ'ଣ ଦେଖିବାକୁ ଲୋକେ ଗଭର୍ଣ୍ଣର୍‌ଙ୍କ ଦାଣ୍ଡରେ ଜୁଣ୍ଡ ହେବାକୁ ଲାଗିଲେ ।

ଖରା ମାଡ଼ି ଆସିଲା । ଗଭର୍ଣ୍ଣର୍ ନିଜକୁ ଓ ଠାକୁରଙ୍କ ମୂର୍ତ୍ତିକୁ ଶାଙ୍କୁଳିରେ ବାନ୍ଧି ଖରାରେ ବସେଇ ରଖିବାକୁ ଆଦେଶ ଦେଲେ । ଆଦେଶ ପାଳିତ ହେଲା । ଲୋକେ କାବା ହୋଇ ଏହାର କାରଣ ପଚାରିଲେ ।

ଗଭର୍ଣ୍ଣର୍ ତାଙ୍କ ମନ କଥା ଲୋକଙ୍କୁ ବୁଝାଇ ଦେଲେ—"ରାଜ୍ୟର ଗଭର୍ଣ୍ଣର୍ ହିସାବରେ ଲୋକଙ୍କ ସୁଖ ଦୁଃଖର ଭାର ମୋ ଉପରେ ନିଶ୍ଚୟ । ସେମିତି ଆମ ଇଷ୍ଟ ଦେବତା ସ୍ୱର୍ଗରେ ଥାଇ ଆମକୁ ଦୁର୍ଦ୍ଦଶାରୁ ଉଦ୍ଧାର କରନ୍ତେ କଅଣ ଏ ଅବସରରେ ଚୁପ୍ ହୋଇ ରହିଛନ୍ତି । ତେବେ ଆଜ ଏ ମୁଣ୍ଡଫଟା ଖରାରେ ପରୀକ୍ଷା ହୋଇଯାଉ—ଆଗ ଠାକୁରଙ୍କ ମୂର୍ତ୍ତି ଖରାରେ ତରଳି ଯାଇ ଭୁଷୁଡ଼ି ପଡ଼ୁଛି ନା ମୋ ରକ୍ତ ମାଂସର ଦେହ ଆଗ ନଷ୍ଟ ହୋଇ ଯାଉଛି ।"

ଲୋକେ ପ୍ରମାଦ ଗଣିଲେ । ଏ କି ପରୀକ୍ଷା ! ଗଭର୍ଣ୍ଣର୍ କ'ଣ ସେମାନଙ୍କ ପାଇଁ ଜୀବନ ଉତ୍ସର୍ଗ କରି ଦେବେ କି ?

ସାରାଦିନ ସେମିତି ତାହା ଖରାରେ ବସି ବସି କଟିଗଲା । ଦେହ ଝୋଲ-ମାରି ଯାଉଥାଏ, ସନ୍ଧ୍ୟାବେଳକୁ ଆସି ଗଭର୍ଣ୍ଣର୍ ଖଟ ଉପରେ ଲମ୍ବିଗଲେ । ସାଙ୍ଗେ ସାଙ୍ଗେ ସେ ଦେଖି ପାରିଲେ ଦିନ ସାରା ଶାଙ୍କୁଳାରେ ବନ୍ଧା ହୋଇଥିବା ଠାକୁର ତାଙ୍କ ଖଟ ଉପରେ ଠିଆ ହୋଇ କହୁଛନ୍ତି— "ରାଜ୍ୟର ଲୋକଙ୍କୁ ରକ୍ଷା କରିବା ତୁମର କର୍ତ୍ତବ୍ୟ । ହିଁ ହେଲେ ଏଥିପାଇଁ କ'ଣ ମତେ ପରୀକ୍ଷା ଦବାକୁ ହବ ? ତୁମେ କଅଣ ଭାବ ମୋ ମୂର୍ତ୍ତିଟାକୁ ଖରାରେ ରଖି ଦେଇଚ ! ମୋର ଅପମାନ କ'ଣ ତୁମର ନୁହଁ ?"

ସେଇ ସ୍ୱପ୍ନରେ ଗଭର୍ଣ୍ଣର୍ ବୁଝେଇ ଲାଗିଲେ—ତୁମେ ଆମର ଇଷ୍ଟ ଦେବତା, ତୁମେ ଯଦି ଆମର ଦୁଃଖ ନ ବୁଝିବ, ବୁଝିବ କିଏ ? ହାଙ୍ଗ୍-କୁ ସହରର ଲୋକେ ବଞ୍ଚିରହିବା କଅଣ ତୁମର ଇଚ୍ଛା ନୁହଁ ? ସେମାନଙ୍କୁ ବଞ୍ଚାଇ ରଖ ପ୍ରଭୁ ! ଚିରଦିନ ଏ ଦେଶ ତୁମର ଗୁଣ ଗାଇବ— ତାଙ୍କୁ ବଞ୍ଚାଅ, ତାଙ୍କୁ ବଞ୍ଚାଅ !

ଠାକୁର କିଛି ସମୟ ଚୁପ୍ ରହି ଧୀର ସ୍ୱରରେ ଉତ୍ତର ଦେଲେ— "ଆକାଶରୁ ବର୍ଷା କରିଦେବା ତ ମୋର କାମ ନୁହେଁ । ମୁଁ ତୁମକୁ ଉପାୟ ବତେଇ ଦେଇ ପାରେ ହେଲେ ଗୋଟିଏ ସର୍ତ୍ତରେ । ମଣିଷମାନେ ସ୍ୱାର୍ଥୀ, କୃତଘ୍ନ । ତାଙ୍କ କାମ ସରିଗଲେ ସେମାନେ ସବୁ ଭୁଲିଯା'ନ୍ତି । ତୁମେ ସେମିତି ଭୁଲିଯିବନି ତ ?

"ନା ନା ନା, ମତେ ବିଶ୍ୱାସ କର ଠାକୁର । ମୁଇଁ ପ୍ରମାଣ କରିଦେବି ମଣିଷ କୃତଘ୍ନ ନୁହେଁ କୃତଜ୍ଞ । ତୁମେ ଉପାୟ କହିଦିଅ—ଲୋକେ ବଞ୍ଚିଯା'ନ୍ତୁ । ମୁଁ ତୁମର ସବୁ କଥା ମାନିବି ।

ଇଷ୍ଟ ଦେବତା କହିଲେ—ଇଭ-ହୁଆଙ୍ଗ୍ ପାହାଡ଼ ଉପରେ ପ୍ରତି ରାତିରେ ଦେବତାମାନଙ୍କର ଆଡ୍ଡା ଜମେ । ରାତି ପାହିଲା ବେଳକୁ ସେମାନେ ପୁଣି ସ୍ୱର୍ଗକୁ ଫେରିଯା'ନ୍ତି । ସେଇଠି ଯଦି ସେମାନଙ୍କୁ ଭେଟି ତୁମ ଦୁଃଖ ଜଣାନ୍ତ ତେବେ ବା କିଛି ଫଳ ହୁଅନ୍ତା । ମନେରଖ, ତୁମକୁ ଦେଖିଦେଲା ମାତ୍ରେ ସେମାନେ ତାଙ୍କ ରୂପ ବଦଳେଇ ଛନୋଟି ଋଷି

ହୋଇଯିବେ । ମନ୍ଦିରେ ଯାଉଥିବା ଋଷି ଜଣକ 'ଇଉ-ହୁଆଙ୍ଗ-ଟି' । ସେଇ ଜଳ ଦେବତା—ସେଇ ମନେ କଲେ ଆକାଶରୁ ମେଘ ଝରେ । ତାଙ୍କର ବାଟ ଓଗାଳିବ—ଯାହା କହିବାର ତାଙ୍କୁ କହିବ । କିନ୍ତୁ ମୋର ଗୋଟିଏ କଥା ମନେ ରଖିବ ତାଙ୍କୁ ପାଖକୁ ଯିବାର ବାଟ ମୁଁ ବତେଇ ଦେଇଛି ଏ ଖବର ଯେମିତି ସେ ନ ଜାଣନ୍ତି । ନ ହେଲେ ମୋ ଆସ୍ଥାନ ତୁମ ରାଜ୍ୟରୁ ଉଠିଲା ବୋଲି ଜାଣ ।

ଗଭର୍ଣ୍ଣର୍ କେବେହେଲେ କାହାରିକୁ ତାଙ୍କ ନାଁ କହିବେ ନାହିଁ ବୋଲି କହି ମୁଣ୍ଡ ଲଗାଇ ପାଦ ତଳେ ପ୍ରଣାମ କରୁଛନ୍ତି ତାଙ୍କ ନିଦ ଭାଙ୍ଗିଗଲା । ଦେହ ଗୋଟା ସୁଦ୍ଧା ଝାଳରେ ବୁଡ଼ିଛି । ସତେ କଅଣ ଏ ଠାକୁରଙ୍କ ଆଦେଶ । ମନେ ମନେ ସେ ତାଙ୍କ ଦେବତାଙ୍କୁ ସହସ୍ରବାର ପ୍ରଣାମ କରି ବିଛଣାରୁ ଉଠି ଆସିଲେ । ସେତେବେଳକୁ ରାତି ଅଧ ।

ଏଇ ଯେ ଠିକ୍ ବେଳ । ଇଉ-ହୁଆଙ୍ଗ ପାହାଡ଼ ସେଠୁ ୭।୮ ମାଇଲ୍ ଦୂର । ରାତି ପାହିବା ପୂର୍ବରୁ ସେଠି ପହଞ୍ଚିବା ଦରକାର । ଚୁପ୍ ଚାପ୍ ସେ ତାଙ୍କ ସହରର ଫାଟକ ଟପି ପାହାଡ଼ ଆଡ଼କୁ ଆଗେଇ ଚାଲିଲେ । କ'ଣ ତାଙ୍କ ପାଇଁ ସେଠି ଅପେକ୍ଷା କରି ରହିଛି କିଏ ଜାଣେ ?

ଦେବତାମାନଙ୍କୁ ଦେଖିବା ଲୋଭରେ ସେ ଚଞ୍ଚଳ ପାହାଡ଼ ଚଢ଼ିବାକୁ ଲାଗିଲେ । କେବେ ତ ଏତେବାଟ ଚାଲିବା ପୁଣି ପାହାଡ଼ ଚଢ଼ିବା ଅଭ୍ୟାସ ନାହିଁ । ତାଙ୍କ ଦେହ ଝୋଲା ମାରି ଯାଉଥାଏ । ଅନେକ ଉପରକୁ ଉଠିଯାଇ ଗୋଟିଏ ଫର୍ଚ୍ଚା ଜାଗାରେ ଥକ୍କା ହୋଇ ବସି ପଡ଼ିଲେ । ରାତି ତଥାପି ପାହିନି । ଜହ୍ନ ଆଲୁଅରେ ସବୁଆଡ଼ ତୋଫା ଦିଶୁଛି । ସତରେ ତାଙ୍କ ସ୍ୱପ୍ନ ସତ ହବ ! ସେ ଠାକୁରମାନଙ୍କ ଦେଖା ପାଇବେ । ଏମିତି ଭାବୁଛନ୍ତି—ଦୂରରୁ ତିନିଜଣ ଋଷି ଆଗିଲା ପିଛିଲା ହୋଇ ପାହାଡ଼ ଉପରୁ ଓହ୍ଲେଇ ଆସୁଥିବାର ଦେଖିପାରିଲେ—ଏ କ'ଣ ! ତାଙ୍କ ସ୍ୱପ୍ନ ତେବେ ସତ ! ଦେହ ତାଙ୍କର ଶୀତେଇ ଗଲା । ଦମ୍ଭ ଧରି ଦ୍ୱିତୀୟ ଋଷି ଜଣଙ୍କୁ ଅଟକେଇବା ପାଇଁ ସେ ପ୍ରସ୍ତୁତ ହୋଇଗଲେ । କାଳେ ଯଦି ଚାଲିଯାଆନ୍ତି ଆଉ କ'ଣ ଦେଖା ମିଳିବ ! ସ୍ୱପ୍ନର ଅଧା ଅଧି ଯଦି ସତ ହେଲାଣି ବାକି ଅଧିକ ମଧ୍ୟ ସତ ଫଳିବ ଏଇ ବିଶ୍ୱାସ ନେଇ ସେ ବାଟ ଜଗି ବସିଲେ । ପ୍ରଥମ ଋଷି ତାଙ୍କୁ ଟପି ଚାଲିଗଲେ । ତା'ପର

ଜଣଙ୍କ ଆସିବାକୁ ସେ ବ୍ୟଗ୍ର ହୋଇ ଅପେକ୍ଷା କରିଥାନ୍ତି । ସେ ଯେମିତି ପାଖେଇ ଆସିଲେ କ'ଣ କହିବେ ଠିକ୍ ଜାଣି ନ ପାରି ସେ ତାଙ୍କୁ କୁଣ୍ଢେଇ ପକାଇଲେ ।"

"କଥା କ'ଣ ! କଥା କ'ଣ ! ଆମେ ତ ସନ୍ନ୍ୟାସୀ ଲୋକ । ତୁମ ସାଙ୍ଗରେ ଆମର କିଛି କାରବାର ନାହିଁ, କାହିଁକି ଅଟକେଇଲେ ! ବାଟ ଛାଡ଼ିଦିଅ ବାବା, ଆମର ବେଳ ଗଡ଼ିଯାଉଛି !"

ଗଭର୍ଣ୍ଣର କି ସେ କଥା ଶୁଣୁଛନ୍ତି ! ତାଙ୍କ ପାଦ ଦୁଇଟିକୁ ଜାବୁଡ଼ି ଧରି କହିଲେ—"ହଁ ତୁମର ବେଳ ହୋଇଯାଉଛି ନଷ୍ଟପ୍ରାୟ । ମୁଁ ତୁମକୁ ବେଶୀ ସମୟ ଅଟକେଇ ରଖିବି ନାହିଁ । ହେଲେ ମୋର ଗୋଟିଏ କଥା ତୁମକୁ ରଖିବାକୁ ପଡ଼ିବ । ପାଣି ବିନା ମୋ ଲୋକେ ପୋକ ମାଛି ପରି ମରି ଯାଉଛନ୍ତି । ସାରାବର୍ଷ ଟୋପାଏ ବି ବର୍ଷା ହୋଇନି । ଲୋକମାନେ କିପରି ହନ୍ତସନ୍ତ ହେଉଛନ୍ତି ତୁମେ କ'ଣ ଦେଖି ପାରୁନ ! ଅସରାଏ ବର୍ଷା ! ଅସରାଏ ଭଲ ବର୍ଷା । ଏତକ ତ ମୋର ମାଗୁଣି ।"

ଋଷି ଜଣଙ୍କ ତାଙ୍କ ପାଦ ଦୁଇଟି ଛଡ଼ାଇବାକୁ ଲାଗିଲେ—"ଭୁଲ୍ ଜାଗାରେ ପହଞ୍ଚିଲେ ବାବା ! ମୁଁ କିଏ ବର୍ଷା କିଏ !

"ମୁଁ ଠିକ୍ ଜାଣେ ତୁମେ 'ଇଉ-ହଙ୍ଗ୍-ଚି' । ମତେ ଠକାଇ ପାରିବନି । ତୁମେ ଆମକୁ ରକ୍ଷା ନ କଲେ ମୁଁ ଏଇଠି ତୁମ ଗୋଡ଼ ଧରି ପଡ଼ି ପଡ଼ି ମରିବି ପଛେ ପାଦେ ଆଗେଇବାକୁ ଦେବିନି ତୁମକୁ । ମୁଁ ମରିଗଲା ପରେ ତୁମେ ମତେ ଆଡ଼େଇ ଦେଇ ଚାଲି ଯାଇପାର । ତା' ପୂର୍ବରୁ ତୁମକୁ ମୁଁ ଛାଡ଼ୁନି । ମୁଁ ଜଣେ ଲୋକ ମରିଗଲେ ଯଦି ସାରା-ସହରର ଲୋକେ ବଞ୍ଚି ପାରିବେ ଜାଣିବି ଏ ଜନ୍ମ ସାର୍ଥକ ହେଲା ।" ଧାରି ଧାରି ହୋଇ ଲୁହ ଗଡ଼ିଯାଇ ଋଷିଙ୍କ ପାଦ ଧୋଇ ହୋଇ ଯାଉଥାଏ ।

ଇଉ-ହୁଅଙ୍ଗ୍-ଚି ଆଉ ଧୈର୍ଯ୍ୟ ଧରି ପାରିଲେନି । ଲୋକଟି ନିଜ ପାଇଁ କିଛି ମାଗୁନି, ମାଗୁଛି ସାରା ଦେଶର ଭୋକିଲା ଶୋଷିଲା ମଣିଷଙ୍କ ପାଇଁ ମୁନ୍ଦାଏ ପାଣି ଏଇତ—କହିଲେ, "ମତେ ଛାଡ଼, ମୁଁ ତୁମର ଏ ମାଗୁଣି ରଖିବି କିନ୍ତୁ ଗୋଟିଏ ସର୍ତ୍ତରେ—କ'ଣ ରାଜି !"

ଗଭର୍ଣ୍ଣର ଲୁହ ପୋଛି ଉଠି ପଡ଼ିଲେ । "ମୁଁ ତୁମର ସବୁ ସର୍ତ୍ତରେ ରାଜି—ତୁମ ଯାହା କହିବ ମାନିବି ।"

ଇଉ-ହୁଆଙ୍ଗ୍-ଟି ହସି ହସି ପଚାରିଲେ, "ସତ କହିଲ, ମୋ ପରିଚୟ ତୁମକୁ ଦେଲା କିଏ ? ଦେଖ ସତ କହିବ । ସେତିକି କେବଳ କହିଦେଲେ ମୁଁ ତୁମ ମାଗୁଣି ପୂରଣ କରିବି । କିନ୍ତୁ ତୁମେ ତୁମ କଥା ନ ରଖିଲେ ମତେ ଆଉ ଦୋଷ ଦେବନି ।"

ଗଭର୍ଣ୍ଣର ପ୍ରମାଦ ଗଣିଲେ । କି ସର୍ତ୍ତ ! ଇଷ୍ଟଦେବତାଙ୍କ ମୁହଁ ମନେ ପଡ଼ିଗଲା—ତାଙ୍କ ପାଖରେ ମଧ୍ୟ କ'ଣ ? ସେ ଧରାପଡ଼ି ଗଲେଣି । ଆଉ ଲୁଚେଇ ଲାଭ ନାହିଁ—ଠାକୁରମାନେ ତ ସର୍ବଜ୍ଞ । ତାଙ୍କୁ ମିଛ କହିଲେ କି ଲାଭ ! ମନେ ମନେ ଭାବିଲେ, ମୁଁ କଥା ଦେଇ କଥା ହୁଡ଼ିବି । ସତ୍ୟ ହୁଡ଼ିବା ଠାରୁ ପାପ ନାହିଁ ତଥାପି ମଣିଷ ସମାଜର ରକ୍ଷା ଲାଗି ମୁଁ ସେ ପାପର ଫଳ ଭୋଗ କରି ପାରିବି । ସେ ସତ କଥା ପ୍ରକାଶ କଲେ ।

ବାଃ ତୁମେ ସତ କହୁଚ, ଏଇ ଯଥେଷ୍ଟ । ଯାଅ—ଦେଖ, ତୁମ ସହରକୁ ବର୍ଷା ଆସିଗଲା । ଗଭର୍ଣ୍ଣର ଋଷିଙ୍କ ଉପରୁ ଆଖି ଫେରାଇ ସହର ଆଡ଼କୁ ଚାହିଁଲେ ।

ଆଃ କି ସୁନ୍ଦର କଳା ହାଣ୍ଡିଆ ମେଘ ଆକାଶ ସାରା ଘୋଟି ହୋଇ-ଯାଇଛି—କୃତଜ୍ଞତାରେ ତାଙ୍କର ଆଖି ଛଳ ଛଳ ହୋଇଗଲା । ମୁହଁ ବୁଲେଇ ଇଉ-ହୁଆଙ୍ଗ-ଟିଙ୍କୁ ଚାହିଁଲାବେଳକୁ ଆଉ କିଏ ସେଠି କାହିଁ ? ସେ ତିନି ଋଷି ଯାକ ସତେକି ପବନରେ ମିଳେଇ ଗଲେ ।

ମଣିଷ ଜାତିର ସୁଖ ସୁବିଧା ଲାଗି ଯେ ଜୀବନ ଉତ୍ସର୍ଗ କରିବା ପାଇଁ ପ୍ରସ୍ତୁତ ହୁଏ, ଠାକୁରମାନଙ୍କ ସ୍ୱର୍ଗାରୋହଣ ଦୃଶ୍ୟ ମଧ୍ୟ ତା ଭାଗ୍ୟରେ ଦେଖିବାକୁ ଥାଏ ଭାବି ଆନନ୍ଦରେ ତାଙ୍କ ମନ ପୂରିଗଲା ।

ଆକାଶ ଆଡ଼କୁ ଚାହିଁ ଚାହିଁ ସେ ଚଞ୍ଚଳ ସହର ଆଡ଼କୁ ଦୌଡ଼ିବାକୁ ଲାଗିଲେ । ପାହାଡ଼ ଟପି ସେ ସହର ପାଖାପାଖି ହେଲାବେଳକୁ ବର୍ଷା ଆରମ୍ଭ ହୋଇ ଯାଇଥାଏ । ଓଦା ହେଇ ହେଇ ସହର ଭିତରକୁ ସେ ପଶିଲେ । ଓଃ—ଲୋକଙ୍କର ସେ କି ଅପୂର୍ବ ଆନନ୍ଦ ! ପିଲାଠାରୁ ବୁଢ଼ା ପର୍ଯ୍ୟନ୍ତ ସମସ୍ତେ ବର୍ଷାରେ ଓଦା ହୋଇ ନାଚୁଛନ୍ତି । ପ୍ରଥମ କରି ସତେ କି ସେମାନେ ବର୍ଷାକୁ ଅନୁଭବ କରୁଛନ୍ତି ।

ତାଙ୍କର ସବୁ ପରିଶ୍ରମ ସଫଳ ହେଲା । ସେ ନିଶ୍ଚିନ୍ତ ହୋଇ ଘରକୁ ଫେରିଲେ ।

ରାତି ଆସିଗଲା । ପୂର୍ବ ରାତିର ସ୍ୱପ୍ନ ତାଙ୍କର ମନେ ପଡ଼ିଗଲା । ଇଷ୍ଟଦେବତାଙ୍କୁ ଦେଇଥିବା କଥା ସେ ରକ୍ଷିପାରି ନାହାନ୍ତି । ସେ ଭୁଲ୍‌ର ପ୍ରାୟଶ୍ଚିତ ତାଙ୍କୁ କରିବାକୁ ହେବ । ସେ ପ୍ରସ୍ତୁତ ହୋଇ ରହିଲେ ।

ତାଙ୍କ ଆଶଙ୍କା ସତ ଫଳିଲା । ଅଧ ରାତି, ଦେବତା ତାଙ୍କ ପାଖରେ ଠିଆ ହୋଇ ତାଙ୍କ ବିଶ୍ୱାସଘାତକତା ଲାଗି ତାଙ୍କୁ ଗାଳି ଦେବାକୁ ଲାଗିଲେ । ନିଜର ନିରୁପାୟ ଅବସ୍ଥା କଥା ଯେତେ ବୁଝେଇଲେ ବି ତାଙ୍କ ରାଗ ବଢ଼ି ଚାଲିଲା !

"ତୁମ ପାପ ଲାଗି ତୁମକୁ ମରିବାକୁ ହବ । ପ୍ରସ୍ତୁତ ହୋଇଥାଅ ।" ଗନ୍ତାୱର୍ ସ୍ଥିର ଭାବରେ ସବୁ କଥା ନିର୍ବିକାର ଚିତ୍ତରେ ହଜମ କରିନେଲେ । ସେ ତ ମରିବା ପାଇଁ କାଲି ରାତିରୁ ପ୍ରସ୍ତୁତ ହୋଇ ସାରିଛନ୍ତି, ଆଉ ବଡ଼ କଥା କ'ଣ ? ତାଙ୍କ ସ୍ଥିର ଭାବ ଦେଖି ଦେବତାଙ୍କ ରାଗ ମଉଳି ଗଲା । ତା'ପରେ ସେ ଅଦ୍ଭୁତ ଏକ ବୁଝାମଣାର କଥା କହିଲେ ।

"ମତେ ଏ ସହର ଛାଡ଼ି ବହୁଦୂର ଦେଶକୁ ଯିବାକୁ ଆଦେଶ ଆସିଛି ସ୍ୱର୍ଗରୁ । କାଲି ମତେ ଏ ସହର ଛାଡ଼ିବାକୁ ହବ । ତୁମ ଛଡ଼ା ଆଉ ମୁଁ କୌଣସି ଲୋକ ଦେଖୁନି ଯେ ମୋର ପିଲାଙ୍କ ଦାୟିତ୍ୱ ନେବ—ତୁମର ଉପରେ ସେ ଭାର ଦେଇ ମୁଁ କାଲି ଚାଲିଲି । ନୂଆ ଠାକୁର ଏ ସହରକୁ ଆସିବା ପୂର୍ବରୁ ଗୋଟିଏ ଭଲ ଜାଗାରେ ତୁମେ ସେମାନଙ୍କୁ ନେଇ ରଖିଦେଇ ପାରିବ ବୋଲି ମୋର ବିଶ୍ୱାସ । ଚାଲିଲି—ପୁଣି ଆର ଜନ୍ମରେ ତୁମ ସାଙ୍ଗେ ଦେଖା ହବ ।"

କଥା ସରିଲେ ଗନ୍ତାୱର୍‌ଙ୍କର ଦେବତା ଉଭେଇ ଗଲେ । ଆଃ ! କି ପୁଣ୍ୟର ଫଳ ଏ ଦେବ ଦର୍ଶନ ! ମଣିଷ ଜୀବନରେ ସ୍ୱାଠାରୁ ବଳି ବଡ଼ ଆଶୀର୍ବାଦ ଆଉ କ'ଣ ଅଛି ?

ସଙ୍ଗେ ସଙ୍ଗେ ସେ ଉଠିପଡ଼ି ଲୋକଙ୍କୁ ଡାକି ସହରରେ ସବୁଠାରୁ ସୁନ୍ଦର ଜାଗାର ସନ୍ଧାନ ନେବାକୁ କହିଲେ । ମିଳିଗଲା ଗୋଟିଏ ସୁନ୍ଦର ମନ୍ଦିର ।

ପରଦିନରୁ ସକାଳୁ ଇଷ୍ଟଦେବତାଙ୍କ ମନ୍ଦିର ଖୋଲା ହେବା ଆରମ୍ଭ ହେଲା । ସେଠି ଥିବା ସମସ୍ତ ଜିନିଷ ଏଇ ନୂଆ ଆସ୍ଥାନକୁ ଅଣା ହେଲା । କେହି ଜାଣିଲେ ନାହିଁ ଆଜି ତାଙ୍କ ସହରର ଇଷ୍ଟଦେବତା ଏ ଜାଗା ଛାଡ଼ି ବହୁ ଦୂର ଦେଶକୁ ଚାଲିଗଲେ । ତାଙ୍କର ସବୁ ବ୍ୟବହାର୍ଯ୍ୟ ଜିନିଷ ନୂଆ ମନ୍ଦିରକୁ ଚାଲି ଆସିଲା ।

'ଇଷ୍ଟଦେବତାଙ୍କ ଠିକ ମନ୍ଦିର' ବୋଲି ତା'ର ନାଁ ହୋଇଗଲା । ଆଜି ବି ସହରରେ ସେଇ ମନ୍ଦିର ସେମିତି ରହିଛି ।

ମଣିଷ ଯେବେବେଳେ ଦେଶ ଜାତି ପାଇଁ ଜୀବନ ଉତ୍ସର୍ଗ କରିବାକୁ ପ୍ରସ୍ତୁତ ହୁଏ, ସେ ଏମିତି ଭଗବାନଙ୍କର ବିଶ୍ୱାସ ଓ ଆଶୀର୍ବାଦର ପାତ୍ର ହୋଇଯାଏ ।